# କିଛି ନଖାଇ ଭୂରି ଭୋଜନ



ବୀର କିଶୋର ଦାସ

# କିଛି ନ ଖାଇ ଭୂରି ଭୋଜନ

ଲେଖକ

**ଶ୍ରୀ ବୀରକିଶୋର ଦାସ**

ବି. ଏ., ଏଚ୍. ଡି. ପି.



ଓଡ଼ିଶା ବୁକ୍ ଷ୍ଟୋର

# ସୂଚୀପତ୍ର



*


ପ୍ରକାଶକ :

ଶ୍ରୀ ଗୋବିନ୍ଦ ଚରଣ ପାତ୍ର

ଓଡ଼ିଶା ବୁକ୍ ଷ୍ଟୋର

କଟକ-୭୫୩ ୦୦୨

ପ୍ରଥମ ସଂସ୍କରଣ—୧୯୭୯

ଦ୍ୱିତୀୟ ସଂସ୍କରଣ—୧୯୮୮

ମୁଦ୍ରାକର :

ଶ୍ରୀ ପ୍ରତାପ କୁମାର ଦାସ

ବ୍ରଜେନ୍ଦ୍ର ପ୍ରେସ୍,

କଟକ-୧

ମୂଲ୍ୟ—ପାଞ୍ଚଟଙ୍କା ପଚିଶ ପଇସା

# କାଟି ନ ଖାଇ ଭୁରି ଭୋଜନ

କପଟୀ ଦୁର୍ଯ୍ୟୋଧନର ଚକ୍ରାନ୍ତ ଯୋଗୁଁ ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ ବନବାସ କଲେ । ତେବେ ସୁଦ୍ଧା ଦୁର୍ଯ୍ୟୋଧନଙ୍କ କ୍ରୋଧ ଶାନ୍ତ ହେଲା ନାହିଁ । କିପରି ପାଣ୍ଡବମାନେ ନିର୍ମୂଳ ହେବେ ସେହି ଚିନ୍ତାରେ ସେ ଥା'ନ୍ତି ଚିନ୍ତିତ । ଥରେ ଦୁର୍ବାସା ଆସି ପହଞ୍ଚିଲେ ଦୁର୍ଯ୍ୟୋଧନଙ୍କ ନଅରରେ । ସେ ତାଙ୍କର ପଦସେବା କରି ଯଥୋଚିତ ସମ୍ମାନ ପ୍ରଦର୍ଶନ କଲେ । ତାଙ୍କର ଆତିଥ୍ୟରେ ଋଷି ପ୍ରସନ୍ନ ହୋଇ କହିଲେ, "ହେ ରାଜା ! ତୁମେ କି ବର ମାଗୁଛ ମାଗ । କପଟୀ ଦୁର୍ଯ୍ୟୋଧନ କହିଲେ—ମହର୍ଷି ! ପାଣ୍ଡବମାନେ ହେଉଛନ୍ତି ମୋର ଭାଇ । ଯଦି ଆପଣ ମୋ ଉପରେ ପ୍ରସନ୍ନ, ତାହାହେଲେ ମୋର ଅନୁରୋଧ ରକ୍ଷା କରି ସମସ୍ତ ଶିଷ୍ୟଙ୍କ ସହିତ ଦିନକ ପାଇଁ ସେମାନଙ୍କର ଅତିଥି ହୁଅନ୍ତୁ । ଆପଣଙ୍କ ଆଗମନରେ ମୁଁ ଯେପରି ଧନ୍ୟ ହେବି, ସେହିପରି ମୋ ଭାଇମାନଙ୍କୁ ଧନ୍ୟ କରନ୍ତୁ । ଦୁର୍ବାସା ସେଥିରେ ରାଜି ହୋଇ ଦୁର୍ଯ୍ୟୋଧନଙ୍କଠାରୁ ବିଦାୟ ନେଲେ ।

ପାଣ୍ଡବମାନେ ଯେତେବେଳେ ବନଗମନ କଲେ ତାଙ୍କ ସହିତ ବହୁତ ବ୍ରାହ୍ମଣ ଯାଇଥିଲେ । ପାଞ୍ଚ ଭାଇଙ୍କ ବହୁ ଅନୁନୟ ସତ୍ତ୍ୱେ ସେମାନେ ଆଉ ରାଜ୍ୟକୁ ଫେରିଲେ ନାହିଁ । ଧର୍ମରାଜଙ୍କ ସହିତ ରାଜ୍ୟରୁ ଧର୍ମ ବିଦାୟ ନେଉଛି ଭାବି, ସେମାନେ ତାଙ୍କୁ ଅନୁଗମନ କରିଥିଲେ । ସେ ଯାହାହେଉ, ଏତେ ଲୋକଙ୍କ ଲାଗି ବଣରେ ଖାଦ୍ୟପେୟ ଆସିବ କେଉଁଠୁ ? ସେହି ଚିନ୍ତାରେ ଧର୍ମରାଜ ଯୁଧିଷ୍ଠିର ବଡ଼ ଚିନ୍ତିତ ହୋଇପଡ଼ିଲେ । ପରିସ୍ଥିତିରୁ ଉଦ୍ଧାର ପାଇବାଲାଗି ସେ କଠୋର ତପସ୍ୟା କଲେ । ତାଙ୍କ ତପସ୍ୟାରେ ସୂର୍ଯ୍ୟଦେବତା ସନ୍ତୁଷ୍ଟ ହୋଇ ତାଙ୍କୁ ଗୋଟିଏ ଅକ୍ଷୟ ପାତ୍ର ପ୍ରଦାନ କରିଥିଲେ । ଦ୍ରୌପଦୀ ନ ଖାଇବା ପର୍ଯ୍ୟନ୍ତ ସେ ପାତ୍ରରୁ ଖାଦ୍ୟପଦାର୍ଥ ଶେଷ ହେଉ ନ ଥିଲା; କିନ୍ତୁ ଦ୍ରୌପଦୀ ଖାଇସାରିଲା ପରେ ସେ ପାତ୍ର ହେଉଥିଲା ଶୂନ୍ୟ । ଦୁର୍ଯ୍ୟୋଧନ ତାହା ଜାଣିପାରି ଦୁର୍ବାସାଙ୍କୁ ଅନୁରୋଧ କରିଥିଲେ ଯେ, ଦ୍ରୌପଦୀ ଖାଇସାରିଲା ପରେ ସେଠାରେ ସଦଳବଳେ ପହଞ୍ଚି ତାଙ୍କର ଅତିଥି ହେବାଲାଗି । ପାଣ୍ଡବମାନଙ୍କୁ ଅପମାନିତ ଓ ଅଭିଶାପଗ୍ରସ୍ତ କରିବା ଥିଲା ତାଙ୍କର ଲକ୍ଷ୍ୟ ।

ହଠାତ୍ ଦିନେ ଦୁର୍ବାସା ଦଶ ସହସ୍ର ଶିଷ୍ୟଙ୍କୁ ସଙ୍ଗରେ ନେଇ ଯାଇ ପହଞ୍ଚିଲେ କାମ୍ୟକ ବନରେ । ସେତେବେଳକୁ ସମସ୍ତଙ୍କର ଖିଆପିଆ ସରିଯାଇଥାଏ । ଋଷିଙ୍କୁ ଦେଖି ଯୁଧିଷ୍ଠିର ଓ ଅନ୍ୟ ଭାଇମାନେ ସାଷ୍ଟାଙ୍ଗ ପ୍ରଣାମ କରି ପାଛୋଟି ନେଲେ ଏବଂ ଆଗମନର ଉଦ୍ଦେଶ୍ୟ ପଚାରିବାରୁ ଦୁର୍ବାସା ଋଷି କହିଲେ,

"ଆମେ ସମସ୍ତେ କ୍ଷୁଧାର୍ତ୍ତ, ଶୀଘ୍ର ଆମ ପାଇଁ ଖାଦ୍ୟପେୟର ବ୍ୟବସ୍ଥା କରନ୍ତୁ । ଆମେ ସ୍ନାନ ସାରି ସଙ୍ଗେ ସଙ୍ଗେ ଆସୁଛୁ ।"



ଏତକ କହି ଶିଷ୍ୟମାନଙ୍କ ସହିତ ସେ ବାହାରିଗଲେ ସ୍ନାନ କରିବାକୁ । ତାହା ଦେଖି ଭୟ ଓ ନିରାଶାରେ ପାଞ୍ଚଭାଇଙ୍କ ମୁହଁ ଶୁଖିଗଲା । କରିବେ କ'ଣ ? ଦ୍ରୌପଦୀ ତ ଖାଇସାରି-ଲେଣି । ପାତ୍ର ପଡ଼ିଛି ଖାଲି । କେଉଁଠୁ ଆଣି ଏତେ ଲୋକଙ୍କୁ ଖାଇବାକୁ ଦେବେ ? କିଛି ବୁଦ୍ଧି ବାଟ ଦିଶିଲା ନାହିଁ ସେମାନଙ୍କୁ । ଦୁର୍ବାସା ଅଭିଶାପ ଦେଇ ସମସ୍ତଙ୍କୁ ଭସ୍ମ କରିଦେବେ, ଏହି ଚିନ୍ତାରେ ସେମାନେ ଭାଙ୍ଗି ପଡ଼ିଲେ । ସ୍ୱାମୀମାନଙ୍କର ଦୁଃଖ ଦେଖି ଦ୍ରୌପଦୀ କହିଲେ, "କିଛି ଚିନ୍ତା କରନ୍ତୁ ନାହିଁ, ସ୍ୱୟଂ ନାରାୟଣ ସବୁ ବ୍ୟବସ୍ଥା କରି ଦେବେ ।" ତାହା ଶୁଣି ଯୁଧିଷ୍ଠିର କହିଲେ, "ଏଇ ଅଳ୍ପ

ସମସ୍ତ ହେଲା ତ ସେ ଦ୍ୱାରକା ଯାଇଛନ୍ତି । ବୋଧହୁଏ ତାଙ୍କ ରଥ ଏ ପର୍ଯ୍ୟନ୍ତ ଦ୍ୱାରକାରେ ପହଞ୍ଚି ନ ଥିବ । ଆମେ କ'ଣ କରିବା ? ସେ ଯଦି ଏଠି ଥା'ନ୍ତେ ତାହାହେଲେ କିଛି ନା କିଛି କରାଯାଇ ପାରିଥାନ୍ତା । ତାଙ୍କ ଉପରେ ନିର୍ଭର କରି କି ଲାଭ ?"

ଦ୍ରୌପଦୀ କହିଲେ, "ଏ କି କଥା କହୁଛନ୍ତି ଆପଣ ! ସେ ଯେଉଁଠି ଥାଆନ୍ତୁ ନା କାହିଁକି, ଆମେ ଯଦି ଭକ୍ତି ସହକାରେ ତାଙ୍କୁ ସ୍ମରଣ କରିବା ସେ ନିଶ୍ଚୟ ଆମର ଦୁଃଖ ବୁଝିବେ ।" ଏହାକହି ଦ୍ରୌପଦୀ କୁଡ଼ିଆ ଭିତରକୁ ଯାଇ ମନେ ମନେ ନାରାୟଣଙ୍କୁ ସ୍ମରଣ କଲେ । ଚିହ୍ନୁ ଚିହ୍ନୁ ନାରାୟଣଙ୍କ ରଥ ସେଠି ଆସି ପହଞ୍ଚିଗଲା । ସମସ୍ତେ ଦେଖି ଅବାକ୍ । ରଥରୁ ଡେଇଁପଡ଼ି କାହାକୁ କିଛି ନ କହି ଶ୍ରୀକୃଷ୍ଣ କୁଡ଼ିଆ ଭିତରକୁ ପଶିଗଲେ ଓ ଛଳନାରେ ଦ୍ରୌପଦୀଙ୍କୁ କହିଲେ, "ଭାରି ଭୋକ, ମୁଁ ଆଉ ଅପେକ୍ଷା କରିପାରିବି ନାହିଁ, ଶୀଘ୍ର ମୋତେ ଯାହା କିଛି ଅଛି ଖାଇବାକୁ ଦିଅ ।" ତାହା ଶୁଣି ଦ୍ରୋପଦୀ କହିଲେ, "ମଧୁସୂଦନ ! କେଉଁଠୁ ଆଣି ମୁଁ ଆପଣଙ୍କୁ ଖାଇବାକୁ ଦେବି ? ଏଣେ ଦୁର୍ବାସା ତାଙ୍କର ଦଶସହସ୍ର ଶିଷ୍ୟଙ୍କ ସହିତ ବର୍ତ୍ତମାନ ଆସି ପହଞ୍ଚିଯିବେ । ମୁଁ କ'ଣ କରିବି, ମୋତେ ଉପାୟ କହନ୍ତୁ ।"

ଶ୍ରୀକୃଷ୍ଣ ଶୁଣି ନ ଶୁଣିଲା ପରି କହିଲେ, "ଯେଉଁଠି ଯାହା ଅଛି ମୋତେ ଖାଇବାକୁ ଦିଅ । ଅସମ୍ଭାଳ ଭୋକ, ମୁଁ ଆଉ ଅପେକ୍ଷା କରିପାରିବି ନାହିଁ । ଦ୍ରୌପଦୀ କହିଲେ, "ସୂର୍ଯ୍ୟ

ଦେଇଥିବା ଅକ୍ଷୟ ପାତ୍ରକୁ ମୁଁ ସଫା କରି ରଖି ସାରିଲଣି । ଆଉ ଖାଦ୍ୟ ଆସିବ କେଉଁଠୁ ? ଏହା କହି ପାତ୍ରଟି ଆଣି ଶ୍ରୀକୃଷ୍ଣଙ୍କୁ ଦେଖାଇଲେ । ଶ୍ରୀକୃଷ୍ଣ ଦ୍ରୌପଦୀଙ୍କ ହାତରୁ ପାତ୍ରଟି ନେଇ ସେଥିରେ ଲାଗିଥିବା ଟିକିଏ ଶାଗ ଆଙ୍ଗୁଠିରେ ଆଣି କହିଲେ, "ହେଇ ଦେଖ, ଏ କ'ଣ ? ଏଥିରେ ପରା ସାରା ସଂସାରର କ୍ଷୁଧା ଦୂର ହୋଇ ପାରିବ । କହୁଛ କ'ଣ ନା ହାଣ୍ଡିରେ କିଛି ନାହିଁ । ତାହା କହି ସେ ଶାଗ ଟିକକ ପାଟିରେ ମାରି କହିଲେ, "ବିଶ୍ବର ଆତ୍ମା ଏଥିରେ ତୃପ୍ତ ହେଉ ।"

ଏଣେ ସ୍ନାନ କରୁଥିବା ଦୁର୍ବାସା ଓ ତାଙ୍କ ଶିଷ୍ୟ-ମାନଙ୍କର ଏକ ଅଦ୍ଭୁତ ଘଟଣା ଘଟିଲା । ଆକଣ୍ଠ ଭୋଜନ ପରେ ଯାହା ହୁଏ ସମସ୍ତଙ୍କ ଦଶା ସେଇଆ ହେଲା । ସମସ୍ତେ ଅଜୀର୍ଣ୍ଣ ହାକୁଟି ମାରି ଆଶ୍ଚର୍ଯ୍ୟ ହୋଇ ପରସ୍ପରକୁ ଚାହିଁବାକୁ ଲାଗିଲେ । ଦୁର୍ବାସା କହିଲେ, "ଏସବୁ ଯାହା ଘଟିଲା ତାହା ଅଲୌକିକ । ଦୁର୍ଯ୍ୟୋଧନ କଥାରେ ପଡ଼ି ଆମେ ଏଠାକୁ ଆସି ଅପଦସ୍ତ ହେବା ସାର ହେଲା । ଚାଲ ଆଉ ପାଣ୍ଡବଙ୍କ କୁଡ଼ିଆକୁ ନ ଯାଇ ଏଇଠୁ ଚୁପ୍‌ଚାପ୍ ଫେରିଯିବା ।"

ଏଣେ ଋଷିମାନଙ୍କର ଆସିବା ଡେରି ହେବା ଦେଖି ଶ୍ରୀକୃଷ୍ଣ ହସି ହସି ସହଦେବଙ୍କୁ କହିଲେ ସେମାନଙ୍କୁ ଡାକି ଆଣିବାଲାଗି । ସହଦେବ ନଦୀକୂଳକୁ ଯାଇ ଦେଖିଲେ ଯେ ସେଠାରେ କେହି ନାହାନ୍ତି । ଫେରିଆସି ସମସ୍ତଙ୍କୁ ସେଇ କଥା କହିଲେ; କିନ୍ତୁ ଯୁଧିଷ୍ଠିରଙ୍କ ମନ ସେଥିରେ ବୁଝିଲା ନାହିଁ ।

ସେ କହିଲେ ଦୁର୍ବାସାଙ୍କର ଆସିବାର କିଛି ଠିକ୍ ସମୟ ନଥାଏ । ହଠାତ୍ ପୁଣି ସେ ଆସି ପାରନ୍ତି । ଯଦି ଆମେ ତାଙ୍କୁ ଭୋଜନ ଦେଇ ନ ପାରିବା, ସେ ଆମକୁ ଅଭିଶାପ ଦେବେ, ଏଥିରେ ସନ୍ଦେହ ନାହିଁ । ତେଣୁ ଆମକୁ ପ୍ରସ୍ତୁତ ହୋଇ ରହିବାକୁ ପଡ଼ିବ । ଶେଷରେ ଶ୍ରୀକୃଷ୍ଣ କପଟୀ ଦୁର୍ଯ୍ୟୋଧନ ଦୁର୍ବାସାଙ୍କୁ ସେଠାକୁ କପଟ ଓ କାହିଁକି ପଠାଇଥିଲା ଫିଟାଇ କହିବାରୁ ମନରୁ ସମସ୍ତଙ୍କର ସନ୍ଦେହ ଦୂର ହେଲା ।

—ମହାଭାରତ—



# ବିଶ୍ୱକର୍ମାଙ୍କୁ ଛୁଟି ମିଳିଲା

ଥରେ ଦେବରାଜ ଇନ୍ଦ୍ର ସ୍ୱର୍ଗରେ ଗୋଟିଏ ବଡ଼ ନଅର ତିଆରି କରିବାକୁ ସ୍ଥିର କଲେ । ବିଶ୍ୱକର୍ମାଙ୍କୁ ଡାକି ନିର୍ଦ୍ଦେଶ ଦେଲେ କାର୍ଯ୍ୟ ଆରମ୍ଭ କରିବାକୁ । କାମ ଚାଲିଲା । ଶହେ ବର୍ଷ ବିତିଗଲେ ବି କାମ ଶେଷ ହେଲାନାହିଁ, କି ବିଶ୍ୱକର୍ମାଙ୍କୁ ଛୁଟି ମିଳିଲା ନାହିଁ । ବିଚରା ବିଶ୍ୱକର୍ମା ବଡ଼ ବ୍ୟସ୍ତ ହୋଇ ପଡ଼ିଲେ; କିନ୍ତୁ କାମ ଶେଷ ନ ହେବା ଯାଏ ଇନ୍ଦ୍ର ତାଙ୍କୁ ଛାଡ଼ିବାକୁ ମନା କରିଦେଲେ । ଶେଷରେ ନିରୁପାୟ ହୋଇ ସେ ବ୍ରହ୍ମାଙ୍କ ପାଖରେ ଯାଇ ଶରଣ ପଶିଲେ । ବ୍ରହ୍ମା କହିଲେ ଇନ୍ଦ୍ର ତ ହେଉଛନ୍ତି ସ୍ୱର୍ଗର ରାଜା, ମୁଁ ବା ତାଙ୍କର କ'ଣ କରି ପାରିବି । ଚାଲ ଭଗବାନଙ୍କ ନିକଟକୁ ଯାଇ ଉପାୟ ପ୍ରାର୍ଥନା କରିବା । ଉଭୟେ ଗଲେ ଭଗବାନ ବିଷ୍ଣୁଙ୍କ ନିକଟକୁ । ଗୁହାରି କରିବାରୁ ଭଗବାନ ବିଶ୍ୱକର୍ମାଙ୍କ ଦୁଃଖ ଶୁଣିଲେ । ସଙ୍ଗେସଙ୍ଗେ ଗୋଟିଏ ବ୍ରାହ୍ମଣ ବାଳକ ରୂପ ଧରି ଯାଇ ପହଞ୍ଚିଲେ ଇନ୍ଦ୍ରଙ୍କ ପାଖରେ । ଇନ୍ଦ୍ର ଆଗମନର କାରଣ ପଚାରିବାରୁ ସେ କହିଲେ, "ଦେବରାଜ ! ମୁଁ ଶୁଣିଲି ଯେ ଆପଣ ଏକ ଅଦ୍ଭୁତ ନଅର

ତିଆର କରୁଅଛନ୍ତି । ତାହାକୁ କେତେଜଣ ବିଶ୍ୱକର୍ମା ତିଆରି କରୁଛନ୍ତି ଆଉ ତାହା କେତେ ବର୍ଷରେ ଶେଷ ହେବ ?"

ତାହା ଶୁଣି ଇନ୍ଦ୍ର ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ବ୍ରାହ୍ମଣ ! ଆପଣ ଏପରି କ'ଣ କହୁଅଛନ୍ତି ? ସ୍ୱର୍ଗରେ କ'ଣ ଏକାଧିକ ବିଶ୍ୱକର୍ମା ଅଛନ୍ତି ?" ଛଦ୍ମବେଶୀ ବିଷ୍ଣୁ କହିଲେ, "ଆପଣ କ'ଣ ନ ଜାଣିଲା ପରି କଥାବାର୍ତ୍ତା କରୁଅଛନ୍ତି ? ଏ ବ୍ରହ୍ମାଣ୍ଡରେ କେତେ ଯେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଇନ୍ଦ୍ର ଇତ୍ୟାଦି ଅଛନ୍ତି ତାହା କେହି କଳନା କରିପାରିବେ ନାହିଁ । ପୃଥିବୀର ଧୂଳିକଣା ଠାରୁ ସେମାନଙ୍କର ସଂଖ୍ୟା ଅଧିକ ହୋଇପାରେ । ସେହିପରି ଏକାଧିକ ବିଶ୍ୱକର୍ମା ନ ଥିବେ କାହିଁକି ? ଆପଣ ତ ଜାଣନ୍ତି ଯେ ମହାବିଷ୍ଣୁଙ୍କ ଲୋମକୂପରେ ଅସଂଖ୍ୟ ବ୍ରହ୍ମାଣ୍ଡ ଲୁଚି ରହିଅଛି । କର୍ମ ଅନୁଯାୟୀ ସମସ୍ତେ ଜନ୍ମଲାଭ କରିଥାଆନ୍ତି । ଆଜି ଯେ ଦେବଲୋକରେ ଜନ୍ମ ନେଇଛି ନିଜର କର୍ମ ନେଇ ପରଜନ୍ମରେ ସେ କୀଟ ଜନ୍ମ ପାଇପାରେ । ଜଣେ କେହି ସ୍ଥାୟୀ ଭାବରେ ଗୋଟିଏ ଜନ୍ମର ସୁଖଦୁଃଖ ଭୋଗି ନ ଥାଏ ।

ବ୍ରାହ୍ମଣ ଯୁବକ ଓ ଇନ୍ଦ୍ରଙ୍କ ମଧ୍ୟରେ କଥାବାର୍ତ୍ତା ଚାଲିଛି, ଠିକ୍ ଏତିକିବେଳେ ସେଠି ଆସି ପହଞ୍ଚିଗଲେ ଜଣେ ବୃଦ୍ଧ ସନ୍ନ୍ୟାସୀ । ଇନ୍ଦ୍ର ତାଙ୍କୁ ଯଥାବିଧି ସମ୍ମାନ ଦେଖାଇ ପାଛୋଟି ନେଲେ । ଆଗନ୍ତୁକଙ୍କୁ ଦେଖି ବ୍ରାହ୍ମଣ ବାଳକ ପଚାରିଲେ, "ମହାତ୍ମା ! ଆପଣଙ୍କ ପରିଚୟ ଦେବେ

କି ?" ବୃଦ୍ଧ ନିଜର ପରିଚୟ ଦେଇ କହିଲେ, "ମୁଁ ଜଣେ ସନ୍ନ୍ୟାସୀ । ବକ୍ଷରେ ମୋର ଲୋମଚକ୍ର ଥିବାରୁ ମୋତେ ସମସ୍ତେ ଲୋମଶ ବୋଲି ଡାକନ୍ତି । ମୋର ଘରଦ୍ୱାର ନାହିଁ ।



( ବିଶ୍ୱକର୍ମାଙ୍କୁ ଛୁଟି ମିଳିଲା )

ମସ୍ତକରେ ମୋର ଯେଉଁ ଆଜାନୁଲମ୍ବିତ ଜଟା ଦେଖୁଛନ୍ତି, ତାହା ଖରା, ବର୍ଷାରୁ ରକ୍ଷା ପାଇବା ଲାଗି ମୁଁ ରଖିଛି । ବକ୍ଷରେ ଯେତେ ଲୋମ ଅଛି, ତାହା ମୋ ଆୟୁର ପ୍ରମାଣ ଦେଇଥାଏ । ଜଣେ ଇନ୍ଦ୍ରଙ୍କ ପତନ ହେଲେ ମୋ ବକ୍ଷରୁ ଗୋଟିଏ ମାତ୍ର ଲୋମ ଛିଡ଼ି ପଡ଼େ । ମୋ ଆଖି ଆଗରେ କେତେ ଯେ ଇନ୍ଦ୍ର ଗଲେଣି ତାହାର ଇୟତ୍ତା ନାହିଁ । ଜାଣୁଛି ତ ସବୁ ନଶ୍ୱର; ତେଣୁ ଘରଦ୍ୱାର ବିଷୟାଜଞ୍ଜାଳରେ ମନ ବା ପୂରାଇ ଥାଆନ୍ତି କାହିଁକି ? ଦୁନିଆରେ ସବୁଠାରୁ ବଡ଼ ଭଗବତ୍ ଆରାଧନା ।

ମୋ ପକ୍ଷରେ ସୁଖସମ୍ପଦ ସ୍ୱପ୍ନପରି ମିଥ୍ୟା । ଏତିକି କହି ଲୋମଶ ସେଠାରୁ ବିଦାୟ ନେଲେ । ତତ୍‌କ୍ଷଣାତ୍ ବ୍ରାହ୍ମଣ ବାଳକ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ଇନ୍ଦ୍ରଙ୍କ ମନରେ ହୋସ ପଶିଲା । ସେ ଭାବିଲେ ଯାହାଙ୍କର ଆୟୁଷ ଏତେ ସେ ତ ନିଜ ପାଇଁ ଖଣ୍ଡିଏ କୁଡ଼ିଆ ନ କରି ଏଣେତେଣେ ବୁଲୁଛନ୍ତି । ମୁଣ୍ଡରେ ଥିବା ଜଟା ତାଙ୍କୁ ଖରା ବରଷାରୁ ରକ୍ଷା କରୁଛି । ମୁଁ ତାଙ୍କ ତୁଳନାରେ ଅଉ କେତେ ବର୍ଷ ରହିବି ଯେ ଏତେ ଆଡ଼ମ୍ବରପୂର୍ଣ୍ଣ ପ୍ରାସାଦ ତିଆରି କରୁଛି । ଏହା ଭାବି ତାଙ୍କ ମନରେ ବୈରାଗ୍ୟ ଆସିଲା । ସ୍ୱର୍ଗ ଛାଡ଼ି ସେ ବଣକୁ ତପସ୍ୟା କରିବା ଲାଗି ବାହାରି ପଡ଼ିଲେ । ସ୍ୱର୍ଗରେ ଅରାଜକତା ସୃଷ୍ଟି ହେବାରୁ ବୃହସ୍ପତି ତାଙ୍କୁ ବୁଝାଇ ପୁଣି ଅମରାବତୀକୁ ଫେରାଇ ଆଣିଲେ ।

—ବ୍ରହ୍ମବୈବର୍ତ୍ତ ପୁରାଣ—



# ନାରଦ ନିଜ ଭୁଲ ବୁଝିଲେ

ହିମାଳୟର ଗୋଟିଏ ଗୁମ୍ଫା ସମୀପରେ ବହିଯାଉଛି ପବିତ୍ର ଗଙ୍ଗାନଦୀ । ଥରେ ସେହି ଗୁମ୍ଫାରେ ତପସ୍ୟା ଆରମ୍ଭ କଲେ ମହର୍ଷି ନାରଦ । ତପସ୍ୟା କରୁ କରୁ ସେ ସମାଧିସ୍ଥ ହେଲେ । ବହୁବର୍ଷ ବିତିଗଲା, ହେଲେ ତାଙ୍କର ସମାଧି ଭଙ୍ଗ ହେଲାନାହିଁ । ତାହା ଜାଣି ଦେବରାଜ ଇନ୍ଦ୍ରଙ୍କ ମନରେ ଭୟ ହେଲା । ସେ ଭାବିଲେ ନାରଦ ବୋଧହୁଏ କଠୋର ତପସ୍ୟା କରୁଛନ୍ତି, ତାଙ୍କର ଇନ୍ଦ୍ରପଦ ନେବାଲାଗି । ତେଣୁ କିପରି ତାଙ୍କ ତପସ୍ୟା ଭଙ୍ଗ ହେବ ସେ ବିଷୟରେ ସେ ଉପାୟ ପାଞ୍ଚିଲେ । ଶେଷରେ ଠିକ୍ କଲେ ଯେ କାମଦେବଙ୍କୁ ପଠାଇ ନାରଦଙ୍କ ତପସ୍ୟା ଭଙ୍ଗ କରିବେ । ଡାକରା ପଡ଼ିଲା । ଉପସ୍ଥିତ ହେଲେ କାମଦେବ । ଇନ୍ଦ୍ରଙ୍କ ପ୍ରସ୍ତାବରେ ସେ ରାଜି ହେଲେ ।

ସଙ୍ଗେ ସଙ୍ଗେ ସେ ବାହାରିପଡ଼ିଲେ ହିମାଳୟ ପର୍ବତକୁ । ଗୁମ୍ଫା ନିକଟରେ ପହଞ୍ଚି ସେ ତପୋମଗ୍ନ ନାରଦଙ୍କ ଉପରକୁ ନିକ୍ଷେପ କଲେ ପଞ୍ଚଶର; କିନ୍ତୁ ଦେବର୍ଷିଙ୍କ ତପସ୍ୟା ଭାଙ୍ଗିଲା ନାହିଁ । କାରଣ ସେହି ସ୍ଥାନରେ ଯେତେବେଳେ ଶିବଙ୍କ ତୃତୀୟ ନେତ୍ରରୁ ଅଗ୍ନି ବାହାରି କାମଦେବଙ୍କୁ ଭସ୍ମକରି ଦେଇଥିଲା, ରତି କାନ୍ଦିବାରୁ ଶିବ ପୁଣି ତାଙ୍କୁ ଜୀବନ୍ୟାସ ଦେଇଥିଲେ ଆଉ କହିଲେ ଯେ ଏହି ସ୍ଥାନରେ କନ୍ଦର୍ପଙ୍କ ପଞ୍ଚଶର ଅକାମୀ ହୋଇ ପଡ଼ିବ ତାହା ହିଁ ହେଲା । ତେଣୁ ଲଜ୍ଜିତ ହୋଇ ସେ ଫେରିଆସିଲେ ଅମରାବତୀପୁରକୁ । ଦେବତାମାନେ ଯେତେବେଳେ ତାଙ୍କୁ ପଚାରିଲେ, ସେ ଲଜ୍ଜା ଭୟରେ କହିଲେ ଯେ ନାରଦଙ୍କ ମହିମା ଅପାର । ତାଙ୍କର କାମ, କ୍ରୋଧ କିଛି ନାହିଁ । ସେ ମୋତେ ଦେଖି ପାଖରେ

ବସାଇ ଅତିଥି ସତ୍କାର କଲେ । ତାଙ୍କର ମଧୁର ବ୍ୟବହାର ଓ ସାଧୁ ଉପଦେଶ ମୁଁ ଭୁଲି ପାରିବ ନାହିଁ । ତାହା ଶୁଣି ଦେବତାମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ବହୁଦିନ ପରେ ନାରଦଙ୍କ ତପସ୍ୟା ଭଙ୍ଗ ହେଲା । ସେ ପ୍ରଥମେ ପହଞ୍ଚିଲେ ଶିବଙ୍କ ପାଖରେ ଓ ତାଙ୍କର ଅପୂର୍ବ ଅନୁଭୂତି କହିଲେ । ଶିବ ତାହା ଶୁଣି ଖୁବ୍ ଖୁସି ହୋଇ କହିଲେ, "ହେ ଦେବର୍ଷି ! ଆପଣଙ୍କର ଏହି ଅନୁଭୂତି ସଦାସର୍ବଦା ଗୋପନ ରଖିବେ । ଏପରିକି ସ୍ୱୟଂ ଭଗବାନ ବିଷ୍ଣୁ ପଚାରିଲେ ମଧ୍ୟ ତାଙ୍କୁ ଏ ବିଷୟରେ କିଛି କହିବେ ନାହିଁ ।"

ଶିବଙ୍କଠାରୁ ବିଦାୟ ନେଇ ନାରଦ ପହଞ୍ଚିଲେ ବୈକୁଣ୍ଠପୁରରେ । ତାଙ୍କ ପେଟରେ ତ ଲୁଣ ମିଳାଏ ନାହିଁ । ସେ କାମଦେବଙ୍କୁ ଜୟ କରିଛନ୍ତି, ସେହି ବିଷୟ ଚାରିଆଡ଼େ ବୁଲି କହିବାକୁ ଲାଗିଲେ । ଗର୍ବରେ ତାଙ୍କ ମନ କୁଣ୍ଢେ ମୋଟ ହୋଇଗଲା । ଭଗବାନ ତାହା ଜାଣିପାରିଲେ । ନାରଦଙ୍କୁ ଡାକି କହିଲେ, "ଦେବର୍ଷି ! ଆପଣ ଜ୍ଞାନୀ ବୈରାଗୀ । ଏତେ ବର୍ଷ କଠୋର ତପସ୍ୟା କରି ମଧ୍ୟ ଆପଣଙ୍କ ମନରେ ଟିକିଏ ହେଲେ ଅଭିମାନ ନାହିଁ । ମୋହ ମାୟା ତ ଦୂରର କଥା । ଆପଣ କାମନାଠୁଁ ବହୁ ଦୂରରେ ।" ତାହା ଶୁଣି ନାରଦଙ୍କ ମନ ଗର୍ବରେ ଆହୁରି ଫୁଲି ଉଠିଲା । କହିଲେ, "ପ୍ରଭୋ ! ଏସବୁ ଆପଣଙ୍କ କୃପା, ନୋହିଲେ କନ୍ଦର୍ପ, ଯେକି ଶିବଙ୍କ ସମାଧିଭଙ୍ଗ କରିଥିଲା; ସେ ମୋ ନିକଟରେ ପରାସ୍ତ ହୁଅନ୍ତା ବା କିପରି ?" ଏତିକି କହି ପ୍ରଭୁଙ୍କଠାରୁ ବିଦାୟ ନେଇ ମନ ପବନ ଯାନରେ ଚଢ଼ି ସେ ଚାଲିଲେ ମର୍ତ୍ତ୍ୟପୁରକୁ ।

ଏଣେ ନାରଦଙ୍କ ଗର୍ବ ଓ ଅଭିମାନ ଭଙ୍ଗ କରିବା ଲାଗି ଭଗବାନ ମାୟା ବିସ୍ତାର କଲେ । ମର୍ତ୍ତ୍ୟରେ ନାରଦ ପହଞ୍ଚି ଦେଖିଲେ ଯେ, ଗୋଟିଏ ସ୍ଥାନରେ ଖୁବ୍ ସୁନ୍ଦର ସାଜସଜ୍ଜା ହୋଇଛି । ସତେ ଯେପରି ବୈକୁଣ୍ଠପୁର । ନାରଦଙ୍କ ମନରେ ଭ୍ରମ ଆସିଲା । ସେ ଭାବିଲେ ମୁଁ ତ ମର୍ତ୍ତ୍ୟକୁ ବହୁତ ଥର ଆସିଛି । ଏ ସୁନ୍ଦର ସ୍ଥାନଟି ନ ଦେଖିଲି ବା କିପରି ? ମନର ସନ୍ଦେହ ଦୂର କରିବା ପାଇଁ ସେ ଲୋକମାନଙ୍କୁ ପଚାରିଲେ । ଲୋକେ କହିଲେ ରାଜା ଶୀଳନିଧି ନିଜ ଝିଅର ସ୍ୱୟଂବର କରିବା ଲାଗି ଏ ସ୍ଥାନଟି ଏପରି ସଜାଇଛି । ଦେଶ ବିଦେଶରୁ ରାଜାମାନେ ଏଠାକୁ ଆସୁଛନ୍ତି । ତାହା ଶୁଣି ନାରଦ ରାଜ-ନଅରରେ ଯାଇ ପହଞ୍ଚିଗଲେ । ରାଜା ତାଙ୍କୁ ଯଥାଯଥ ସମ୍ମାନ ଦେଖାଇ ନିଜ ଝିଅ ସହିତ ପରିଚୟ କରାଇଦେଲେ । ନାରଦ ଝିଅଟିର ଲକ୍ଷଣ ଦେଖି ଚକିତ ହୋଇଗଲେ । ସେ କହିଲେ, "ଏ ଝିଅର ଯେଉଁ ସବୁ ଶୁଭ ଲକ୍ଷଣ ଅଛି, ତାକୁ ଯିଏ ବିବାହ କରିବ ସେ ହେବ ଅମର । ଯୁଦ୍ଧରେ ତାକୁ କେହି ଜୟ କରିପାରିବେ ନାହିଁ ।" ଏତିକି କହି ସେ ରାଜାଙ୍କଠାରୁ ବିଦାୟ ନେଲେ ।

ସେହି ଝିଅକୁ କିପରି ନିଜେ ବିବାହ କରିବେ ସେଥିପାଇଁ ଉପାୟ ଚିନ୍ତା କରିବାକୁ ଲାଗିଲେ; କିନ୍ତୁ କିଛି ବୁଦ୍ଧିବାଟ ତାଙ୍କୁ ଦିଶିଲା ନାହିଁ । ସେ ଭଗବାନ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ଭଗବାନ ଆବିର୍ଭୂତ ହୋଇ କାରଣ ପଚାରିବାରୁ ସେ କହିଲେ, "ପ୍ରଭୋ ! ଆପଣ ତ ଅନ୍ତର୍ଯ୍ୟାମୀ ସବୁକଥା ଜାଣନ୍ତି । ମୋତେ ଉପାୟ କହନ୍ତୁ ମୁଁ ରାଜା ଶୀଳନିଧିଙ୍କ ଝିଅକୁ ପାଇବି କିପରି ?"

ଭଗବାନ କହିଲେ ଆଉ ଉପାୟ କଣ ? ତୁମେ ତ ଋଷି, ତୁମର ରୂପଭଙ୍ଗ ଦେଖି କ'ଣ ସେ ଝିଅ ତୁମକୁ ରାଜି ହେବ ?" ନାରଦ କହିଲେ, "ଯଦି ଆପଣ ମୋତେ ନିଜରୂପ ଦିଅନ୍ତେ, ତାହାହେଲେ ସ୍ୱୟମ୍ବରରେ ନିଶ୍ଚିତ ଭାବେ ରାଜଜେମା ମୋତେ ବରଣମାଳା ପିନ୍ଧାନ୍ତା ।" ଭଗବାନ ତଥାସ୍ତୁ କହି ଅନ୍ତର୍ଦ୍ଧାନ ହୋଇଗଲେ ।

ନାରଦ ନିଜ ରୂପକୁ ଚାହିଁ ଦେଖିଲେ ଯେ ବିଷ୍ଣୁଙ୍କ ପରି ସେ ସୁନ୍ଦର ରୂପ ଧାରଣ କରିଛନ୍ତି; କିନ୍ତୁ ଭଗବାନଙ୍କ



( ନାରଦ ନିଜ ଭୁଲ ବୁଝିଲେ )

ମାୟାରେ ତାଙ୍କ ମୁହଁ ମାଙ୍କଡ଼ମୁହଁ ପରି ହୋଇଛି ଅସୁନ୍ଦର । ତାହା ସିଏ ବା ଦେଖିବେ କିପରି ? ମନ ଖୁସିରେ ରାଜଜେମାଙ୍କୁ ପାଇବା ଆଶାରେ ସେ ସ୍ୱୟମ୍ବର ସଭାରେ ଉପସ୍ଥିତ ହେଲେ । ଭଗବାନ ମଧ୍ୟ ରାଜପୁତ୍ର ବେଶରେ ନାରଦଙ୍କ ପାଖରେ ଯାଇ

ବସିଥାନ୍ତି । ସ୍ୱୟମ୍ବର ସମୟ ହେବାରୁ ରାଜକୁମାରୀ ଶ୍ରୀମତୀ ବରଣମାଳା ଧରି ସଭା ମଧ୍ୟକୁ ବିଜେ କଲେ । ନାରଦଙ୍କ ଅସୁନ୍ଦର ମୁହଁ ଦେଖି ସେ ମୁହଁ ମୋଡ଼ି ଦେଇ ଆଗେଇ ଚାଲିଲେ ଓ ତାଙ୍କ ପାଖରେ ରାଜକୁମାର ବେଶ ଧରି ବସିଥିବା ବିଷ୍ଣୁଙ୍କୁ ପତି ରୂପେ ବରଣ କଲେ । ତାହା ଦେଖି ନାରଦଙ୍କ ମନ ଫିକା ପଡ଼ିଗଲା । ନିଜେ ଭଗବାନଙ୍କ ରୂପ ପାଇ ମଧ୍ୟ ରାଜକୁମାରୀ ତାଙ୍କୁ ନାପସନ୍ଦ କଲା, ତାହାର କାରଣ ସେ କିଛି ବୁଝିପାରିଲେ ନାହିଁ । ଉପସ୍ଥିତ ରାଜପୁତ୍ରମାନେ ତାଙ୍କୁ ଦେଖି ହସିବାକୁ ଲାଗିଲେ ଆଉ କହିଲେ, "ରୂପ ତ ଆପଣଙ୍କର ଏଡ଼େ ସୁନ୍ଦର, ମୁହଁକୁ ଏପରି ଅସୁନ୍ଦର କଲା କିଏ ?" ନାରଦ ସଙ୍ଗେ ସଙ୍ଗେ ଦର୍ପଣରେ ନିଜର ମୁହଁ ଦେଖି, ତାହା ଭଗବାନଙ୍କର ମାୟା ବୋଲି ଜାଣି ଧାଇଁଲେ ବିଷ୍ଣୁଲୋକକୁ । ସେଠି ପହଞ୍ଚି ଦେଖନ୍ତି ଯେ ରାଜକୁମାରୀ ଶ୍ରୀମତୀଙ୍କ ସହିତ ଭଗବାନ ବିଜେ କରିଛନ୍ତି ।

ଋଷିଙ୍କୁ ଅଭ୍ୟର୍ଥନା କରିବା ଲାଗି ସେ ଯେତେବେଳେ ସିଂହାସନରୁ ଉଠି ଆସିଲେ, ସେତେବେଳେ ନାରଦ ରାଗିଯାଇ କହିଲେ, ମାୟାଧର ! ତୁମର ଅଭ୍ୟର୍ଥନା ସେତିକି ଥାଉ । ତୁମ ଯୋଗୁ ମୁଁ ରାଜସଭାରେ ଯେପରି ଅପମାନ ପାଇଲି ତାହା ଭୁଲି ପାରିବି ନାହିଁ । ସବୁବେଳେ ତୁମେ ପରକୁ ହଇରାଣରେ ପକାଇ ଆନନ୍ଦ ପାଇଥାଅ । ସମୁଦ୍ର ମନ୍ଥନ କଥା ମନେ ପକାଅ । ସମସ୍ତେ କଷ୍ଟ କଲେ । ଶିବ ପିଇଲେ ହଳାହଳ; କିନ୍ତୁ ତୁମେ ପାଇଲ କଉସ୍ତୁଭମଣି ଆଉ ଲକ୍ଷ୍ମୀଠାକୁରାଣୀଙ୍କୁ । ଏବେ ନିଜର ସ୍ୱାର୍ଥ ଲାଗି ମୋତେ ଯେଉଁ ଅପମାନ ଦିଆଇଲ, ତାହା ମୋ ପକ୍ଷେ ଅସହ୍ୟ । ମୁଁ ଅଭିଶାପ ଦେଉଛି, ତୁମର ସମସ୍ତ

ମାୟା ନଷ୍ଟ ହେଉ । ମୋ ପରି ତୁମେ ସ୍ତ୍ରୀ ବିରହରେ ଘାରି ହୁଅ ।

ସଙ୍ଗେ ସଙ୍ଗେ ମାୟା ଅପସରି ଗଲା । ସେ ଦେଖିଲେ, ସେଠି ରାଜକୁମାରୀ ନାହାନ୍ତି, ତାଙ୍କ ସ୍ଥାନରେ ଉଭା ହୋଇଛନ୍ତି ଲକ୍ଷ୍ମୀ ଠାକୁରାଣୀ । ମନରେ ତାଙ୍କର ଗଭୀର ଅନୁତାପ ଆସିଲା । ସେ ନିଜର ଭୁଲ ବୁଝି ପାରି ଭଗବାନଙ୍କ ନିକଟରେ କ୍ଷମା ମାଗିଲେ । ପ୍ରଭୁ ଖୁସି ହୋଇ କହିଲେ, "ଦେବର୍ଷି ! ଆପଣଙ୍କ ଗର୍ବ ଓ ଅହଂକାର ଭାଙ୍ଗିବା ଲାଗି ମୁଁ ଏପରି ମାୟା କରିଥିଲି । ହେଉ, ମୁଁ ଆଜିଠୁ ପ୍ରତିଜ୍ଞା କରୁଛି ଯେ ମାୟା ତୁମକୁ ଆଉ କେବେ ସ୍ପର୍ଶ କରିବ ନାହିଁ ।"

—ରାମ ଚରିତ ମାନସ—



# ଉର୍ବଶୀର ଅଭିଶାପ

ପାଣ୍ଡବମାନଙ୍କ ବନବାସ କାଳର କଥା । ବ୍ୟାସଦେବଙ୍କ କଥା ମାନି ଅର୍ଜ୍ଜୁନ ଗଲେ ତପସ୍ୟା କରିବାକୁ । କିଛିଦିନ କଠୋର ତପସ୍ୟା କଲେ । ତପସ୍ୟାରେ ମହାଦେବ ପ୍ରସନ୍ନ ହୋଇ ତାଙ୍କୁ ପ୍ରଦାନ କଲେ ପାଶୁପତ ଅସ୍ତ୍ର । ତାହା ଜାଣି ଇନ୍ଦ୍ର ଭାରି ଖୁସି ହେଲେ । ଅର୍ଜ୍ଜୁନଙ୍କୁ ନିଜ ରଥରେ ବସାଇ ସେ ସ୍ୱର୍ଗକୁ ନେଇଗଲେ । ତାଙ୍କ ବୀରତ୍ୱ ଓ ତପୋନିଷ୍ଠାର ଭୂରିଭୂରି ପ୍ରଶଂସା କରି ଇନ୍ଦ୍ର ଓ ଅନ୍ୟ ଦେବତାମାନେ ତାଙ୍କୁ ବହୁ ଅସ୍ତ୍ରଶସ୍ତ୍ର ପ୍ରଦାନ କଲେ । ସେହି ଅସ୍ତ୍ର ବଳରେ ଅର୍ଜ୍ଜୁନ ଦେବତାମାନଙ୍କ ପରମଶତ୍ରୁ ନିବାତ କବଚ ସହିତ ଯୁଦ୍ଧ କଲେ । ପୂର୍ବରୁ ବହୁ ଚେଷ୍ଟା କରି ମଧ୍ୟ ଦେବତାମାନେ ସେହି ଅସୁରକୁ ପରାସ୍ତ କରି ପାରୁ ନ ଥିଲେ; କିନ୍ତୁ ଅର୍ଜ୍ଜୁନ ନିଜ ଗାଣ୍ଡିବଧନୁରୁ ଶର ପ୍ରୟୋଗ କରି ତାକୁ ପରାସ୍ତ କଲେ । ଭୟ ଓ ଅପମାନରେ ନିବାତ ପାତାଳପୁରରେ ଯାଇ ଲୁଚିଲା । ଆଉ ସ୍ୱର୍ଗ ଆକ୍ରମଣ କଲା ନାହିଁ ।

ଅର୍ଜ୍ଜୁନଙ୍କ ବିଜୟବାର୍ତ୍ତା ସ୍ୱର୍ଗ ରାଜ୍ୟରେ ପ୍ରଚାରିତ ହେଲା । ଦେବତାମାନେ ଆନନ୍ଦରେ ତାଙ୍କୁ ସ୍ୱାଗତ ଜଣାଇଲେ । ତାଙ୍କ ସମ୍ମାନାର୍ଥେ ଇନ୍ଦ୍ର ଏକ ସଭା ଡାକିଲେ । ସବୁ ଦେବଦେବୀ

ସେହି ସଭାରେ ଯୋଗଦେଲେ । ଗନ୍ଧର୍ବ ଓ ଅପ୍‌ସରାମାନେ ନାନାବିଧ ବାଦ୍ୟ ଓ ନୃତ୍ୟର ବ୍ୟବସ୍ଥା କରି ଅର୍ଜୁନଙ୍କ ମନ-ତୋଷ କରିବାକୁ ଚେଷ୍ଟା କରୁଥାନ୍ତି । ଜଣକ ପରେ ଜଣେ ଅପ୍‌ସରା ନାଚୁଥାନ୍ତି । ଏହି ସମୟରେ ତାଙ୍କର ମନର ଗତି ଧ୍ୟାନ ବଳରେ ଇନ୍ଦ୍ର କଳନା କରୁଥାଆନ୍ତି ଯେ, ପ୍ରକୃତରେ ଅର୍ଜୁନ ସେହି ଅପ୍‌ସରାମାନଙ୍କ ପ୍ରତି ଆକୃଷ୍ଟ ହେଉଛନ୍ତି କି ନାହିଁ । ଅର୍ଜୁନ ଟିକିଏ ହେଲେ ସେମାନଙ୍କ ନୃତ୍ୟ ଓ ବାଦ୍ୟ ଆଡ଼କୁ ଦୃଷ୍ଟି ଦେଉ ନ ଥାନ୍ତି । ସ୍ୱର୍ଗର ସାଜସଜ୍ଜା ବି ତାଙ୍କୁ ଭଲ ଲାଗୁ ନ ଥାଏ । ସବୁବେଳେ ତାଙ୍କର ମନେପଡ଼ୁଥାଏ ବନବାସ କରୁଥିବା ଭାଇ ଓ ମା'ଙ୍କର ଦୁଃଖ ଦୁର୍ଦ୍ଦଶା ।

ହଠାତ୍ ଉର୍ବଶୀ ଦେବସଭାକୁ ଆସୁଛନ୍ତି ବୋଲି ପ୍ରତିହାରୀ ଉଚ୍ଚ ସ୍ୱରରେ ଜଣାଇଲା । ଅର୍ଜୁନ ଅନ୍ୟମନସ୍କ ଥିଲେ ମଧ୍ୟ ମୁହୂର୍ତ୍ତେକ ଉର୍ବଶୀ ଆଡ଼କୁ ଚାହିଁ ରହିଲେ । କିଛି ସମୟ ନୃତ୍ୟ ପରେ ସଭା ମଉଳିଲା । ଦେବରାଜ ଇନ୍ଦ୍ର ଗନ୍ଧର୍ବରାଜ ଚିତ୍ରସେନଙ୍କୁ ଡାକି କହିଲେ, "ଉର୍ବଶୀଙ୍କୁ କୁହ, ସେ ଆଜି ରାତିରେ ସ୍ୱତନ୍ତ୍ର ନୃତ୍ୟ ଗୀତର ଆୟୋଜନ କରି ଅର୍ଜୁନଙ୍କ ମନ ଖୁସି କରାଇବେ; କାରଣ ସେ ଆମର ଅଶେଷ ଉପକାର କରିଅଛନ୍ତି, ତାଙ୍କ ଋଣ ଆମେ ଶୁଝିପାରିବା ନାହିଁ ।"

ଚିତ୍ରସେନ ସଙ୍ଗେ ସଙ୍ଗେ ଦେବରାଜଙ୍କ ଆଦେଶ ଉର୍ବଶୀଙ୍କୁ ଜଣାଇଲେ । ଉର୍ବଶୀ ସେଥିରେ ରାଜି ହେଲେ । ରାତି ହେଲା । ଅର୍ଜୁନ ଏକ ସୁସଜ୍ଜିତ ଗୃହରେ ବିଶ୍ରାମ ନେଲେ । ଠିକ୍ ସମୟରେ ସେହି ଗୃହରେ ପହଞ୍ଚିଲେ ଉର୍ବଶୀ । ତାଙ୍କୁ ଦେଖି ଅର୍ଜୁନ ଶେଯରୁ ଉଠିପଡ଼ି ପ୍ରଣାମ କରି କହିଲେ, "ମାଆ !

ଆପଣ ମୋ ଶୋଇବା ଘର ଭିତରକୁ ଆସିଲେ କାହିଁକି ? ମୁଁ ଆପଣଙ୍କର କି ସେବା କରିବି ଆଦେଶ ଦିଅନ୍ତୁ ।"

ତାହା ଶୁଣି ଉର୍ବଶୀ ଅବାକ୍ ହୋଇଗଲେ । ତାଙ୍କୁ ଆଗରୁ କୁହାଯାଇଥିଲା ଯେ, ଅର୍ଜୁନ ତାଙ୍କ ପ୍ରତି ଆସକ୍ତ; ତେଣୁ ତାଙ୍କର ନୃତ୍ୟ ଗୀତ ଏକାକୀ ଉପଭୋଗ କରିବାଲାଗି ଅତ୍ୟନ୍ତ ଆଗ୍ରହୀ; କିନ୍ତୁ ଏ କ'ଣ ? ଆଗ୍ରହ ପରିବର୍ତ୍ତେ ସେ ଯେ ବୈରାଗ୍ୟ ପ୍ରଦର୍ଶନ କରୁଛନ୍ତି । ତାହା ଦେଖି ଉର୍ବଶୀ କହିଲେ, "ଦେବତା-ମାନେ ଯେଉଁଠି ମୋର ନୃତ୍ୟଗୀତ ଦେଖିବାକୁ ପାଗଳ, ଆପଣ ସ୍ୱର୍ଗକୁ ଆସି ଏପରି ବୈରାଗ୍ୟ ଦେଖାଉଅଛନ୍ତି କାହିଁକି ? ଦେବସଭାରେ ମୋର ଆଗମନ ଖବର ପାଇ, ଆପଣ ପରା ମୋତେ ଦେଖିବା ଲାଗି ଅପଲକ ନୟନରେ ଚାହିଁ ରହିଥିଲେ । ବର୍ତ୍ତମାନ ଏପରି ହେଉଛନ୍ତି କାହିଁକି ?"

ଅର୍ଜୁନ କହିଲେ, "ଆପଣ କୁରୁକୁଳର ଜନନୀ ବୋଲି ମୁଁ ଋଷିମାନଙ୍କଠାରୁ ଆଗରୁ ଶୁଣିଥିଲି । ତେଣୁ ଆପଣଙ୍କ ଦର୍ଶନ ପାଇଁ ମୁଁ ଉତ୍କଣ୍ଠିତ ଥିଲି । ମନରେ ମୋର କୌଣସି ପାପଚିନ୍ତା ନ ଥିଲା । ବୋଧହୁଏ ଦେବରାଜ ଇନ୍ଦ୍ର ମୋତେ ଭୁଲ ବୁଝିଲେ ।"

ଉର୍ବଶୀ କହିଲେ, "ପାର୍ଥ ! ଏହା ସ୍ୱର୍ଗପୁର । ଏଠି ଅପ୍‌ସରାମାନେ କାହାରି ମା' ଭଉଣୀ କିମ୍ବା ସ୍ତ୍ରୀ ନୁହନ୍ତି । ଏଠି ପ୍ରତ୍ୟେକ ପ୍ରାଣୀ ନିଜର ପୁଣ୍ୟ ଅନୁସାରେ ଆମକୁ ଉପଭୋଗ କରିଥାନ୍ତି । ତେଣୁ ମୋର ନାଚ ଗୀତ ଉପଭୋଗ କରିବା ଲାଗି ଆପଣ ମନରେ ଦ୍ୱିଧା ବୋଧ କରନ୍ତୁ ନାହିଁ ।"

ଅର୍ଜୁନ କହିଲେ, "କୁନ୍ତୀ, ମାଦ୍ରୀଙ୍କୁ ମୁଁ ଯେଉଁ ଦୃଷ୍ଟିରେ ଦେଖେ ଆପଣଙ୍କୁ ଠିକ୍ ସେହି ଦୃଷ୍ଟିରେ ଦେଖୁଛି । ତେଣୁ ମୋତେ ସେ ଦଗରେ ଆଉ ବାଧ୍ୟ କରନ୍ତୁ ନାହିଁ ।" ତାହା



( ଉର୍ବଶୀର ଅଭିଶାପ )

ଶୁଣି ଉର୍ବଶୀ ଭାବିଲେ ଯେ ଅର୍ଜୁନ ତାଙ୍କ ସୌନ୍ଦର୍ଯ୍ୟର ଅବମାନନା କରୁଅଛନ୍ତି । ତେଣୁ କ୍ରୋଧରେ ଅଭିଶାପ ଦେଇ କହିଲେ, "ତୁମେ ନପୁଂସକ ହୋଇ ବର୍ଷେ ପର୍ଯ୍ୟନ୍ତ ସ୍ତ୍ରୀମାନଙ୍କ ଗହଣରେ ରହି ସମୟ କଟାଇବ ।" ଶାପ ଦେଇ ଖିନ୍ନ ମନରେ ଉର୍ବଶୀ ଫେରିଗଲେ ।

ସକାଳ ହେଲା । ଦେବରାଜ ଇନ୍ଦ୍ର ସବୁକଥା ଜାଣିଲେ । ଅର୍ଜୁନଙ୍କ ସଂଯମକୁ ପ୍ରଶଂସା କରି ସେ କହିଲେ, "ଧନଞ୍ଜୟ !

ଯେ ପ୍ରକୃତ ଧାର୍ମିକ ସେ କୌଣସି ବିପଦର ସମ୍ମୁଖୀନ ହୋଇ ନ ଥାଏ । ଯଦି କେବେ ତା' ପ୍ରତି କୌଣସି ବିପତ୍ତି ଆସେ, ତାହାହେଲେ ତାହା ଅମଙ୍ଗଳ ନ କରି ମଙ୍ଗଳ କରିଥାଏ । ଉର୍ବଶୀର ଅଭିଶାପ ଯୋଗୁଁ ବର୍ଷକ ଲାଗି ତୁମକୁ ଭୋଗିବାକୁ ପଡ଼ିବ; ସେହି ବର୍ଷକ ତୁମେ ଅଜ୍ଞାତ ବନବାସ କରିବ । ଅତଏବ ତୁମକୁ କେହି ଚିହ୍ନି ପାରିବେ ନାହିଁ । ତେଣୁ ପରୋକ୍ଷରେ ଏହି ଶାପକୁ ତୁମେ ବରଦାନ ବୋଲି ଭାବି ମନରୁ ଦୁଃଖ ଦୂର କର ।"

ଅର୍ଜ୍ଜୁନ ସ୍ୱର୍ଗରୁ ବିଦାୟ ନେଇ ଫେରି ଆସି ଅଜ୍ଞାତ ବନବାସ କଲେ ।

—ମହାଭାରତ ବନପର୍ବ—



# ଦୁର୍ଯ୍ୟୋଧନ ପାଣ୍ଡବଙ୍କ ଶତ୍ରୁ ହେଲେ କାହିଁକି ?

ଧର୍ମରାଜ ଯୁଧିଷ୍ଠିର ରାଜସୂୟ ଯଜ୍ଞ ଆରମ୍ଭ କଲେ । ସମଗ୍ର ପୃଥିବୀର ରାଜାମାନେ ହେଲେ ନିମନ୍ତ୍ରିତ । ମୟଦାନବ ନେଲେ ରାଜସଭା ସଜାଇବାର ଦାୟିତ୍ୱ । ବହୁ ଆଡ଼ମ୍ବର ସହକାରେ ଯଜ୍ଞ ଶେଷ ହେଲା । ଅତିଥି ଅଭ୍ୟାଗତମାନେ ସସମ୍ମାନେ ବିଦାୟ ନେଲେ । କେବଳ ଦୁର୍ଯ୍ୟୋଧନ, ପାଣ୍ଡବଙ୍କ ବନ୍ଧୁବାନ୍ଧବ ଓ ଶ୍ରୀକୃଷ୍ଣ ଇନ୍ଦ୍ରପ୍ରସ୍ଥରେ କିଛିଦିନ ଅବସ୍ଥାନ କଲେ ।

ଯଜ୍ଞକୁ ଆସିଥିବା ରାଜାମାନେ ଯୁଧିଷ୍ଠିରଙ୍କୁ ବହୁ ମୂଲ୍ୟବାନ ଉପହାରମାନ ଦେଇଥିଲେ । ସେଗୁଡ଼ିକୁ ନେଇ କୋଷାଗାରରେ ରଖିବା ଦାୟିତ୍ୱ ଦିଆଯାଇଥିଲା ଦୁର୍ଯ୍ୟୋଧନଙ୍କୁ । ସେ ସିନା ଉପହାରଗୁଡ଼ିକୁ ନେଇ ସାଇତି ରଖୁଥିଲେ, ହେଲେ ସେଗୁଡ଼ିକୁ ଦେଖି ଈର୍ଷାରେ ତାଙ୍କ ମନ ଜଳି ଉଠୁଥିଲା । ସେ ନିଜେ ମାନଗୋବିନ୍ଦ ଆଉ ଏତେ ବଡ଼ ଯୋଦ୍ଧା ହୋଇ ମଧ୍ୟ ତାଙ୍କୁ କେହି ପଚାରୁ ନାହାନ୍ତି ଅଥଚ ଯୁଧିଷ୍ଠିରଙ୍କୁ ଚକ୍ରବର୍ତ୍ତୀ ସମ୍ରାଟ ବୋଲି ସମସ୍ତେ ଏକ ସ୍ୱରରେ ସ୍ୱୀକାର କରୁଅଛନ୍ତି । ତାହା ଭାବି ତାଙ୍କ ମନରେ ଭୟଙ୍କର କ୍ରୋଧ ଜାତ ହେଲା । ସଙ୍ଗେ ସଙ୍ଗେ ସେ ବାହାରି ପଡ଼ିଲେ ରାଜସଭାକୁ ତାଙ୍କ କ୍ରୋଧ ପ୍ରକାଶ କରିବା ଲାଗି ।

ସେତେବେଳେ ରାଜସଭାରେ ଶ୍ରୀକୃଷ୍ଣ, ଦ୍ରୌପଦୀ ଓ ଅନ୍ୟ ଭାଇମାନଙ୍କ ସହ ଆଳାପ ଆଲୋଚନାରେ ବ୍ୟସ୍ତ ଥାଆନ୍ତି ରାଜା ଯୁଧିଷ୍ଠିର । ଦୁର୍ଯ୍ୟୋଧନ ମୁଖ୍ୟଦ୍ୱାର ଦେଇ ସଭାରେ ପ୍ରବେଶ କଲେ । ମୟୂଦାନବ ଅଦ୍ଭୁତ ଢଙ୍ଗରେ ତିଆରି କରିଥିଲେ ସେହି ରାଜମଣ୍ଡପ । ଆଲୋକସଜ୍ଜା ଏପରି ହୋଇଥିଲା ଯେ ଶୁଖିଲା ସ୍ଥାନ ଜଳପୂର୍ଣ୍ଣ ଓ ଜଳପୂର୍ଣ୍ଣ ସ୍ଥାନ ଶୁଖିଲା ପରି ଜଣା ପଡୁଥିଲା । ଦୁର୍ଯ୍ୟୋଧନ ତ ଥିଲେ ପରଘର ଦାୟିତ୍ୱରେ, ସେ ବା ଜାଣିବେ କିପରି ? ଶୁଖିଲା ଜାଗାକୁ ଜଳପୂର୍ଣ୍ଣ ଭାବି ସେ ଲୁଗା ଟେକି ଚାଲିବାକୁ ଲାଗିଲେ । ସଭାସଦ୍‌ମାନେ ତାହା ଦେଖି ମନେ ମନେ ହସୁଥାନ୍ତି । ସେମାନଙ୍କୁ ଦେଖି ଦୁର୍ଯ୍ୟୋଧନଙ୍କ ରାଗ ଆହୁରି ବଢ଼ିଗଲା । ସେ ଆଉ ଲୁଗା ନ ଟେକି ଜୋରରେ ଚାଲିବାକୁ ଲାଗିଲେ । ଜଳପୂର୍ଣ୍ଣ ସ୍ଥାନକୁ ଶୁଖିଲା ଭାବି ବାଟ ନ ଭାଙ୍ଗି ସିଧା ଚାଲିଲେ ଓ ଜଳକୁଣ୍ଡରେ ପଡ଼ି ତାଙ୍କ ରାଜପୋଷାକ ତିନ୍ତିଗଲା । ତାହା ଦେଖି ଭୀମ ଉଚ୍ଚସ୍ୱରରେ ହସିବାକୁ ଲାଗିଲେ । ଦ୍ରୌପଦୀ ହସିଉଠି ପରିହାସରେ କହିଲେ, "ଅନ୍ଧର ପୁଅ ତ ନିଶ୍ଚୟ ଅନ୍ଧ ହେବ, ତାକୁ ବାଟ ଜଣାପଡ଼ିବ କିପରି ?"

ତାହା ଶୁଣି ଦୁର୍ଯ୍ୟୋଧନଙ୍କ ରାଗ ଦ୍ୱିଗୁଣ ବଢ଼ିଗଲା । ସେ ଆଉ ମନକଥା କହିବେ ବା କାହାକୁ । ସଙ୍ଗେ ସଙ୍ଗେ ରଥରେ ବସି ହସ୍ତିନାକୁ ଫେରି ଆସିଲେ ।

ସେହିଦିନଠାରୁ ପାଣ୍ଡବଙ୍କ ପ୍ରତି ତାଙ୍କ ମନରେ ରାଗ ଜମାଟ ବାନ୍ଧିବାକୁ ଲାଗିଲା । ଦ୍ରୌପଦୀଙ୍କୁ ଅପମାନ ଦେଇ ପାଣ୍ଡବମାନଙ୍କୁ କିପରି ହଇରାଣ କରିବେ, ସେହି ବିଷୟରେ

ସେ ଉପାୟ ଚିନ୍ତା କଲେ । ଶକୁନିଙ୍କଠାରୁ ପରାମର୍ଶ ନେଇ ସେ ପାଣ୍ଡବମାନଙ୍କ ବିରୁଦ୍ଧରେ ଆରମ୍ଭ କଲେ ଷଡ଼ଯନ୍ତ୍ର । ଭୀମ ଓ



( ଅପମାନରେ ଦୁର୍ଯ୍ୟୋଧନ ରାଗି ଉଠିଲେ )

ଦ୍ରୌପଦୀଙ୍କ ହସ ଓ ବ୍ୟଙ୍ଗୋକ୍ତିରୁ ମହାଭାରତ ଯୁଦ୍ଧର ବୀଜ-ବପନ କରାଗଲା ।

—ଶ୍ରୀମଦ୍ଭାଗବତ—



## ଅଷ୍ଟଅଧ୍ୟାୟ ହଁ ସ୍ୱର୍ଗ

ଦ୍ୱାପର ଯୁଗର କଥା । ଗହନ ବନ ମଧ୍ୟରେ ଆଶ୍ରମ କରି ରହିଥାନ୍ତି ଋଷି ଦ୍ରୋଣ ଓ ତାଙ୍କର ଧର୍ମପତ୍ନୀ ଧରିତ୍ରୀସୁନ୍ଦରୀ । ଧରିତ୍ରୀସୁନ୍ଦରୀଙ୍କ ନାମ ଯେପରି, ରୂପ ମଧ୍ୟ ଠିକ୍ ସେହିପରି । ଦେହରେ ତାଙ୍କର ଅଳଙ୍କାର ନ ଥାଏ, ଖାଲି ବକଳ ପିନ୍ଧି ସେ ଦିଶୁଥାନ୍ତି ଭାରି ସୁନ୍ଦରୀ । ଯେ ତାଙ୍କୁ ଦେଖେ ସେ ଭାବେ ସତେ ଯେପରି ଭଗବତୀ ବସୁନ୍ଧରା ଜନ୍ମ ନେଇଛନ୍ତି ସେହି ଆଶ୍ରମରେ । ଆଶ୍ରମର ଚାରିପାଖରେ ବେଲ, ତୁଳସୀ ଆଉ ଚମ୍ପାଗଛ । ମନୋରମ ପରିବେଶ ମଧ୍ୟରେ ଆଶ୍ରମ ପଥିକୀଙ୍କର ଦୃଷ୍ଟି ଆକର୍ଷଣ କରୁଥାଏ ।

ପ୍ରତିଦିନ ଋଷି ଦ୍ରୋଣ ଭିକ୍ଷା କରି ଯାହା ଆଣନ୍ତି, ସେଥିରୁ ପ୍ରଥମେ ଅତିଥିମାନଙ୍କୁ ଭୋଜନ ଦେଲାପରେ ଯାହା ବଳେ ଦୁହେଁ ତାହା ଖାଇ ଖୁସିରେ ସମୟ କଟାଇ ଦିଅନ୍ତି । ବାଟୋଇମାନେ ମଧ୍ୟ ସେଠାରେ ରାତ୍ରିଯାପନ କରନ୍ତି । ଋଷିପତ୍ନୀଙ୍କ ଆତିଥ୍ୟରେ ସମସ୍ତେ ହୁଅନ୍ତି ମୁଗ୍‌ଧ ।

ଦିନେ ସନ୍ଧ୍ୟା ଆଗତ ପ୍ରାୟ । ଦ୍ରୋଣ ଭିକ୍ଷା କରି ଫେରି ନ ଥାନ୍ତି । ଆଶ୍ରମରେ ତାଙ୍କୁ ଅପେକ୍ଷା କରି ରହିଥାଆନ୍ତି ଧରିତ୍ରୀସୁନ୍ଦରୀ । ସେହି ସମୟରେ ଜଣେ ଅଳ୍ପ ବୟସର ତପସ୍ୱୀ

ତାଙ୍କ ବୃଦ୍ଧ ପିତାମାତାଙ୍କ ସହିତ ଆସି ସେଠି ପହଞ୍ଚିଲେ । ତପସ୍ୱୀ ଜଣଙ୍କର ବର୍ଣ୍ଣ ନୀଳ; ଚେହେରା ମଧ୍ୟ ଭାରି ସୁନ୍ଦର । ଋଷିପତ୍ନୀ ପାଛୋଟି ନେଇ ସେମାନଙ୍କୁ ଆଶ୍ରମରେ ବିଶ୍ରାମ ନେବାକୁ ଅନୁରୋଧ କଲେ । ତପସ୍ୱୀ କହିଲେ, "ମୁଁ ପିତାମାତାଙ୍କ ସହିତ ତୀର୍ଥ କରି ବାହାରିଛି । ତୁମର ଅତିଥି ସତ୍କାର କଥା ଜାଣି ଆଶ୍ରମକୁ ଆସିଲି । ବର୍ତ୍ତମାନ ମୋର ପିତାମାତା ଭୋକରେ ଆକୁଳ । ସେମାନଙ୍କ ପାଇଁ ଯଥାଶୀଘ୍ର ଖାଦ୍ୟପେୟର ବନ୍ଦୋବସ୍ତ ନ କଲେ ସେମାନଙ୍କର ପ୍ରାଣବାୟୁ ଉଡ଼ିଯିବ ।"

ତାହା ଶୁଣି ଋଷିପତ୍ନୀ କହିଲେ, "ହେ ଅତିଥି ! ମୋର ସ୍ୱାମୀ ଭିକ୍ଷା କରି ଏପର୍ଯ୍ୟନ୍ତ ଫେରି ନାହାନ୍ତି । ଆଶ୍ରମରେ କିଛି ଖାଦ୍ୟ ନାହିଁ । ସେ ବର୍ତ୍ତମାନ ଫେରି ଆସୁଥିବେ । ଅନୁଗ୍ରହ କରି ଅଳ୍ପ ସମୟ ଅପେକ୍ଷା କରନ୍ତୁ, ମୁଁ ସମସ୍ତ ବନ୍ଦୋବସ୍ତ କରିଦେବି । କିନ୍ତୁ ସେଥିରେ ତପସ୍ୱୀଙ୍କ ମନ ବୁଝିଲା ନାହିଁ । ସେ ବିରକ୍ତ ହୋଇ କହିଲେ, "ଏ କ'ଣ ତୁମର ଅତିଥି ସେବା ? ମୋର ପିତାମାତା ଭୋକରେ ଅଥୟ ହୋଇ ପଡ଼ିଲେଣି । ଅପେକ୍ଷା କରିବାକୁ ଆଉ ତାଙ୍କର ଧୈର୍ଯ୍ୟ ନାହିଁ । ଯଦି ତାଙ୍କର ପ୍ରାଣବାୟୁ ଉଡ଼ିଯାଏ, ତାହାହେଲେ ମୋର ତୀର୍ଥଯାତ୍ରା ବିଫଳ ହେବ ।"

ଋଷିପତ୍ନୀ ଅତି ନମ୍ର କଣ୍ଠରେ କହିଲେ, "ନା, ଭଗବାନ ତାହା କରାଇଦେବେ ନାହିଁ । ଏଠୁ ଅତିଥି ଉପଯୁକ୍ତ ଆତିଥ୍ୟ ନ ପାଇ କେବେ କେଉଁଦିନ ନିରାଶ ହୋଇ ଫେରି ନ ଥାନ୍ତି । ଆପଣ ଟିକିଏ ଧୈର୍ଯ୍ୟ ଧରନ୍ତୁ । ତାଙ୍କର ଦୟାରୁ ଯଥାଶୀଘ୍ର ମୁଁ ଖାଦ୍ୟର ବନ୍ଦୋବସ୍ତ କରିବି ।"

ତପସ୍ୱୀ କହିଲେ, "ଆଶ୍ରମରେ ତୁମେ କେଉଁ ଦେବତାର ଆରାଧନା କରୁଛ ? ଏଠାରେ ଥିବା ପତ୍ର-ପୁଷ୍ପ-ଫଳରୁ ମୁଁ



( ଧର୍ମସୁନ୍ଦରୀ ଓ ତପସ୍ୱୀ )

ଜାଣୁଛି ଯେ, ତୁମେ କୌଣସି ନିର୍ଦ୍ଦିଷ୍ଟ ଦେବତାଙ୍କୁ ପୂଜା କରୁନାହଁ । ଶିବ, ବିଷ୍ଣୁ ଓ ଅନ୍ୟ ଦେବଦେବୀଙ୍କର ପ୍ରିୟ ଫଳପୁଷ୍ପ ତୁମେ ଆଶ୍ରମରେ ଲଗାଇଛ । କିଏ ତୁମର ଆରାଧ୍ୟ-ଦେବତା ମୁଁ ତାହା ଜାଣିପାରୁନାହଁ ।"

ଋଷିପତ୍ନୀ କହିଲେ, "ମୁଁ ଅଶିକ୍ଷିତା । ଆପଣ ଏ ବିଷୟ ମୋ ସ୍ୱାମୀଙ୍କୁ ପଚାରିଲେ ସେ ଉତ୍ତର ଦେବେ । ତେବେ ମୁଁ ଜାଣେ ଯେ ଶ୍ରୀହରି ସର୍ବତ୍ର ବିରାଜମାନ । ସବୁ ତାଙ୍କରି ସୃଷ୍ଟି । ସବୁ ଦେବଦେବୀଙ୍କ ମଧ୍ୟରେ ସେ ହେଉଛନ୍ତି ଶ୍ରେଷ୍ଠ । ଆଶ୍ରମର

ଏହି ବୃକ୍ଷଲତା ସବୁବେଳେ ତାଙ୍କର ଉପସ୍ଥିତ ସୂଚାଇ ଥାଆନ୍ତି । ମୁଁ ସେହି ଭଗବାନଙ୍କୁ ପୂଜାକରେ । ଆପଣ ତାଙ୍କୁ ବିଷ୍ଣୁ, ଶିବ, ଶକ୍ତି ଯାହା କହନ୍ତୁ ମୋ ଆଖିରେ ସେ ସମସ୍ତେ ଏକ ।"

ସବୁ ଶୁଣି ମଧ୍ୟ ତପସ୍ୱୀ ଅଥୟ ହୋଇ ପଡ଼ିଲେ । ସେତେବେଳକୁ ତାଙ୍କ ପିତାମାତା କ୍ଳାନ୍ତ ଓ କ୍ଷୁଧାରେ ଚେତାହୀନ ହୋଇ ପଡ଼ି ରହିଥାଆନ୍ତି । ଧର୍ମସୁନ୍ଦରୀ ଅତିଥିଙ୍କର ବିକଳ ଦେଖି ଆଉ ଧୈର୍ଯ୍ୟ ଧରି ପାରିଲେ ନାହିଁ । ସେ ସେମାନଙ୍କୁ ମାତ୍ର କେତେକ୍ଷଣ ଅପେକ୍ଷା କରିବାକୁ କହି ଖାଦ୍ୟସାମଗ୍ରୀ ଆଣିବା ପାଇଁ ଧାଇଁଲେ ନିକଟସ୍ଥ ସହରକୁ ।

ପୂର୍ବରୁ ସେ କେବେ ଆଶ୍ରମ ଛାଡ଼ି ଯାଇ ନ ଥିଲେ । ତେଣୁ ନିକଟସ୍ଥ ସହରକୁ ଯିବାଲାଗି ବାଟ ତାଙ୍କୁ ଜଣା ନ ଥିଲା । ଅତିଥି ନିରାଶ ହେବେ, ଏହି ଭୟରେ ସେ ଧାଇଁଲେ ସହର ଅଭିମୁଖେ । ସେତେବେଳକୁ ବଜାର ବନ୍ଦ ହେବା ସମୟ । ଦୋକାନମାନଙ୍କରେ ନାହିଁ ନ ଥିବା ଭିଡ଼ । ଗୋଟିଏ ଷେଜରାତି ଦୋକାନରେ ସେ ଯାଇ ପହଞ୍ଚିଲେ । ଭିଡ଼ ଭିତରେ ଦୋକାନରୁ ସଉଦା ଆଣିବା ଲାଗି ଗୋଟିଏ କଡ଼ରେ ଛିଡ଼ା ହେଲେ । ଜୀବନକାଳ ମଧ୍ୟରେ ସେ ଏତେଲୋକଙ୍କ ସମାଗମ କେବେ ଦେଖି ନ ଥିଲେ । ସଉଦା ନେଉଥିବା ସବୁ ଲୋକଙ୍କ ଆଖି ପଡ଼ିଲା ତାଙ୍କ ଉପରେ । ଦେହରେ ବଲ୍କଳର ପରିଧାନ, ମୁଣ୍ଡରୁ ଜଟା ପାଦ ପର୍ଯ୍ୟନ୍ତ ଲମ୍ବିଥାଏ, ଦେଖିବାକୁ ସାକ୍ଷାତ୍ ଦେବୀ ମୂର୍ତ୍ତି । ଲୋକେ ସଉଦା କରିବେ କ'ଣ, ସମସ୍ତଙ୍କ ଆଖି ଲାଖି ରହିଲା ତାଙ୍କର ଉପରେ । ଦୋକାନୀ ତାଙ୍କ ଆଡ଼କୁ ଚାହିଁଲା । ଧର୍ମସୁନ୍ଦରୀ କହିଲେ, "ମୁଁ ଋଷି ଦ୍ରୋଣଙ୍କ ପତ୍ନୀ ।

ମୋ ସ୍ୱାମୀ ଭିକ୍ଷାକରି ଏପର୍ଯ୍ୟନ୍ତ ଫେରି ନାହାନ୍ତି । ଆଶ୍ରମରେ ତିନିଜଣ ଅତିଥି ପହଞ୍ଚି ଭୋକରେ ବିକଳ ହେଉଛନ୍ତି । ମୋତେ କିଛି ସଉଦା ଦିଅନ୍ତୁ, ମୁଁ ସେମାନଙ୍କ ଲାଗି ଖାଦ୍ୟ ତିଆରି କରିବି ।"

ଦୋକାନୀ ପଚାରିଲା—ପଇସା ଆଣିଚ ତ ?

ଋଷିପତ୍ନୀ କହିଲେ, "ପଇସା ! ତାହା କପରି ଜିନିଷ ? ମୁଁ ପ୍ରଥମଥର ପାଇଁ ଆପଣଙ୍କଠୁଁ ଏହି ଶବ୍ଦଟି ଶୁଣୁଛି । ମୁଁ ଆଗରୁ କେବେ ତାହା ଦେଖିନାହିଁ ।" ଦୋକାନୀ ବାକ୍ସରୁ କାଢ଼ି ପଇସା ଦେଖାଇ କହିଲା, ଏହାର ବଦଳରେ ମୁଁ ସଉଦା ଦେଇଥାଏ । ପଇସା ତ ଆଣି ନାହିଁ, ଆଉ ସଉଦା ନେବ କପରି ? ଋଷିପତ୍ନୀ କହିଲେ, "ପଇସା ନ ଦେଲେ କ'ଣ ଆପଣ ସଉଦା ଦେବେ ନାହିଁ ?" ଦୋକାନୀ ମନା କଲା । କିଛିକ୍ଷଣ ଚିନ୍ତାକରି ଧର୍ମସୁନ୍ଦରୀ କହିଲେ, "ହେଉ, ଆପଣ ସଉଦା ଦିଅନ୍ତୁ, ମୋର ସ୍ୱାମୀ ଆସିଲେ ତାହାର ମୂଲ୍ୟ ଦେଇଯିବେ ।" କିନ୍ତୁ ଦୋକାନୀ ଶେକ୍‌ଠୋକ୍ ମନା କରିଦେଇ ଅନ୍ୟମାନଙ୍କୁ ସଉଦା ଦେବାକୁ ଲାଗିଲା ।

ତାହା ଦେଖି ନିରାଶ ହୋଇ ସେ କହିଲେ, "ମୁଁ କ'ଣ ଖାଲି ହାତରେ ଫେରିଯିବି ? ଅତିଥି ଭୋକରେ ମଲେ ମୋର କେତେ ପାପ ହେବ, ତାହା ଆପଣ ଟିକିଏ ବୁଝନ୍ତୁ ।" ଦୋକାନୀ କିଛି ଶୁଣିଲା ନାହିଁ, କେବଳ ତାଙ୍କର ସୁନ୍ଦର ଶରୀରକୁ ଚାହିଁ ରହିଲା ।

ଦୋକାନ ବନ୍ଦ ହେଲା । ଗରାଖମାନେ ଯେ ଯାହା ଘରକୁ ବାହୁଡ଼ିଲେ । ଧର୍ମସୁନ୍ଦରୀ ସଉଦା ନେବାକୁ ଏକା ଅପେକ୍ଷା କରି ରହିଲେ । ଦୋକାନୀ କହିଲା, "ହଁ, ମୁଁ ତୁମକୁ ଗୋଟିଏ ସର୍ତ୍ତରେ ସଉଦା ଦେବାକୁ ରାଜି ଅଛି । ହେଲେ ମୁଁ ଯାହା ମାଗିବି, ତାହା ଦେବାକୁ ପଣକର ।" ଋଷିପତ୍ନୀ କହିଲେ, "ମୁଁ ପ୍ରତିଜ୍ଞା କରୁଛି, ମୋ ପାଖରେ ଯାହା ଥିବ, ତାହା ଦେବାକୁ ମୁଁ ଅରାଜି ନୁହେଁ ।" ତାହା ଶୁଣି ଦୋକାନୀ ମନଖୁସିରେ ଥଳୀରେ ସବୁ ସଉଦା ଭରିଦେଲା ।

ତା'ପରେ ସଉଦାକୁ ଧରି ଯେତେବେଳେ ଋଷିପତ୍ନୀ ଆଶ୍ରମ ଅଭିମୁଖେ ବାହାରିଲେ, ଦୋକାନୀ ପଛରୁ ଡାକି କହିଲା, "ମୁଁ ତ ତୁମ କଥା ପୂରଣ କଲି । ମୋ କଥା ଏବେ ଶୁଣ ।" ଋଷିପତ୍ନୀ କହିଲେ, "ତେବେ କୁହନ୍ତୁ ଆପଣ କ'ଣ ଚାହାନ୍ତି ।" ଦୋକାନୀ ଖରାପ ଇଙ୍ଗିତ ଦେଇ ତାଙ୍କର ଶରୀର ଉପଭୋଗ କରିବାକୁ ଚାହିଁଲା । ତାହା ଶୁଣି ଋଷିପତ୍ନୀ ଅବାକ୍ ହୋଇଗଲେ । ସେ କେବେ ଆଶା କରି ନ ଥିଲେ ଯେ ଦୁନିଆରେ ଏତେ ନୀଚସ୍ତରର ଲୋକ ଅଛନ୍ତି, ଯେଉଁମାନେ କି ପର ସ୍ତ୍ରୀ ଉପରେ ପାପ ଦୃଷ୍ଟି ପକାଇବାକୁ ପଛାନ୍ତି ନାହିଁ । ଦେହ ତାଙ୍କର ଲଜ୍ଜା ଓ କ୍ରୋଧରେ କମ୍ପି ଉଠିଲା । ସେ ମନେ ମନେ ଭାବିଲେ ଯେ ଯଦି ଭଗବାନ ସର୍ବତ୍ର ବିରାଜମାନ, ତାହାହେଲେ କ'ଣ ତାଙ୍କ ଶରୀରରେ ନାହାନ୍ତି ! ଦୋକାନୀ କାହିଁକି ତାଙ୍କ ଦେହ ପ୍ରତି ଲୋଭ ଦୃଷ୍ଟି ପକାଉଛି, ତାହା ଭାବି ତାଙ୍କ ମନ ବିଦ୍ରୋହୀ ହୋଇଉଠିଲା । ସଙ୍ଗେ ସଙ୍ଗେ

ସେ ଦୋକାନ ଭିତରକୁ ଯାଇ ଗୋଟିଏ ଦାଢ଼ୁଆ ଛୁରୀ ଆଣିଲେ । ନିଜର ସୁନ୍ଦର ମୁଖ ଓ ଅଙ୍ଗପ୍ରତ୍ୟଙ୍ଗକୁ କ୍ଷତବିକ୍ଷତ କରି ପକାଇଲେ ଓ ରକ୍ତାକ୍ତ ଅବସ୍ଥାରେ ଧାଇଁଲେ ଆଶ୍ରମ ଅଭିମୁଖେ ।

ଯେତେବେଳେ ସେ ଆଶ୍ରମରେ ପହଞ୍ଚିଲେ ତାଙ୍କର ରକ୍ତାକ୍ତ ଶରୀର ଦେଖି ତପସ୍ୱୀ ତାହାର କାରଣ ପଚାରିଲେ । ରଣଚଣ୍ଡୀ କହିଲେ "ତପସ୍ୱୀ । ମୁଁ ଆଉ ବେଶୀ ସମୟ ବଞ୍ଚିବି ନାହିଁ । ଏହି ରକ୍ତ ବନମଧ୍ୟରେ ଆପଣଙ୍କ ପିତାମାତାଙ୍କ ଲାଗି ମୋତେ ଖାଦ୍ୟସାମଗ୍ରୀ ଆଣିବାକୁ ପଡ଼ିଲା । ଋଷି ଦ୍ରୋଣ ଆସିଲେ ତାଙ୍କୁ କହିବେ ଯେ ମୁଁ ମୋ ଜୀବନ ବନମଧ୍ୟରେ ଆଶ୍ରମର ଆଦର୍ଶ ରକ୍ଷା କରିଛି । ଏତିକି କହି ସେ ତଳେ ପଡ଼ିଗଲେ ।

ହଠାତ୍ ଆଶ୍ରମ ଅଦ୍ଭୁତ ଆଲୋକରେ ଆଲୋକିତ ହୋଇ ଉଠିଲା । ତପସ୍ୱୀ ଓ ତାଙ୍କ ବୃଦ୍ଧ ପିତାମାତା କେଉଁଆଡ଼େ ଉଭେଇଗଲେ ଓ ତାଙ୍କ ସ୍ଥାନରେ ଆବିର୍ଭୂତ ହେଲେ ବିଷ୍ଣୁ, ଶିବ ଓ ପାର୍ବତୀ । ଧର୍ମସୁନ୍ଦରୀ ତାଙ୍କର ଦର୍ଶନ ପାଇ ଧନ୍ୟ ହେଲେ । ହଠାତ୍ ତାଙ୍କ ପ୍ରାଣବାୟୁ ଉଡ଼ିଗଲା । ଠିକ୍ ସେତିକି-ବେଳେ ଦ୍ରୋଣ ଆସି ପହଞ୍ଚିଲେ ଆଶ୍ରମରେ । ଭଗବାନ ବିଷ୍ଣୁ କହିଲେ, "ହେ ଋଷି ! ଆମେ ତୁମର ଆତିଥ୍ୟ ଓ ପ୍ରଭୁଭକ୍ତି ପରୀକ୍ଷା କରୁଥିଲୁ । ଯୁଗେ ଯୁଗେ ତୁମେ ହୁହେଁ ଅମର

ହୋଇ ରହିବ । ପରଜନ୍ମରେ ତୁମ ପତ୍ନୀ ଯଶୋଦା ହୋଇ ଜନ୍ମ ହେବେ, ମୁଁ ହେବି ତାଙ୍କର ପୁତ୍ର । ତୁମେ ହେବ ନନ୍ଦ ଆଉ ପାର୍ବତୀ ଯୋଗମାୟା ରୂପେ ଜନ୍ମ ହେବେ । ଏତିକି କହି ସମସ୍ତେ ଅନ୍ତର୍ଦ୍ଧାନ ହୋଇଗଲେ ।

—ଶକ୍ତିଦଳ—



# ରାଜାଙ୍କ ଦାନ ପରୀକ୍ଷା

ସମୁଦ୍ର ମନ୍ଥନ ପରେ ବିଷ୍ଣୁଙ୍କ ଦୟାରୁ କେବଳ ଦେବତାମାନେ ହିଁ ଅମୃତ ପାଇଲେ । ଅସୁର ଓ ଦେବତାମାନଙ୍କ ମଧ୍ୟରେ ଯୁଦ୍ଧ ହେଲା । ଅମୃତ ପାନ କରିଥିବାରୁ ଦେବତାମାନେ ହେଲେ ବିଜୟୀ । ସେହି ଯୁଦ୍ଧରେ ଦୈତ୍ୟରାଜ ବଳୀ ମୃତ୍ୟୁ ବରଣ କଲେ; କିନ୍ତୁ ଶୁକ୍ରାଚାର୍ଯ୍ୟ ମୃତ୍ୟୁସଞ୍ଜିବନୀ ମନ୍ତ୍ର ବଳରେ ବଳୀଙ୍କ ସହିତ ଅନ୍ୟ ରାକ୍ଷସମାନଙ୍କୁ ଜୀବନ୍ୟାସ ଦେଲେ । କିଛିଦିନ ପରେ ଶୁକ୍ରାଚାର୍ଯ୍ୟ ବଳୀଙ୍କ ସେବାରେ ପ୍ରସନ୍ନ ହୋଇ ତାଙ୍କୁ ଗୋଟିଏ ଯଜ୍ଞ କରିବା ଲାଗି କହିଲେ । ଗୁରୁଙ୍କ ଆଦେଶ ମାନି ସେ ଯଜ୍ଞର ଆୟୋଜନ କଲେ । ଯଜ୍ଞ ହେଲା । ହୋମ କୁଣ୍ଡରେ ସ୍ୱୟଂ ଅଗ୍ନିଦେବତା ଆବିର୍ଭୂତ ହୋଇ ବଳୀଙ୍କୁ ଦିବ୍ୟ ରଥ, ଅକ୍ଷୟତୂଣୀର ତଥା ବହୁ ଅସ୍ତ୍ରଶସ୍ତ୍ର ଉପହାର ଦେଲେ ।

ସେହି ଅସ୍ତ୍ରଶସ୍ତ୍ରରେ ବଳୀୟାନ ହୋଇ ବଳୀ ପୁଣି ସ୍ୱର୍ଗପୁର ଆକ୍ରମଣ କଲେ । ଏଥର ବଳୀଙ୍କ ତେଜ ଦେଖି ଦେବରାଜ ଇନ୍ଦ୍ର ହତାଶ ହୋଇ ପଡ଼ିଲେ । ତାଙ୍କ କବଳରୁ ଦେବତାମାନେ କିପରି ରକ୍ଷା ପାଇବେ, ସେଥିଲାଗି ଦୈତ୍ୟଗୁରୁ ସେମାନଙ୍କୁ ପର୍ବତ ଗୁହାରେ ଆତ୍ମଗୋପନ କରିବାଲାଗି ଆଦେଶ ଦେଲେ । ବିନା ଯୁଦ୍ଧରେ ଅମରାବତୀ ଅଧିକାର କଲେ ଦୈତ୍ୟରାଜ ବଳୀ ।

ସ୍ୱର୍ଗରେ ଯେ ରାଜୁତି କରେ ତାକୁ ଶହେ ଅଶ୍ୱମେଧ ଯଜ୍ଞ କରିବାକୁ ପଡ଼ିଥାଏ । କର୍ମଭୂମି ପୃଥିବୀରେ ଯାହା କରାଯାଏ ତାହାର ଫଳ ମିଳିଥାଏ । ସ୍ୱର୍ଗରେ କରାଯାଇଥିବା କର୍ମରୁ କୌଣସି ସୁଫଳ ମିଳି ନ ଥାଏ । ତେଣୁ ସ୍ୱର୍ଗରେ ସ୍ଥାୟୀ ରାଜୁତି କରିବାକୁ ହେଲେ ମର୍ତ୍ତ୍ୟରେ ଶହେ ଅଶ୍ୱମେଧ ଯଜ୍ଞ କରିବାକୁ ପଡ଼ିବ ବୋଲି ଶୁକ୍ରାଚାର୍ଯ୍ୟ ବଳୀଙ୍କୁ ବୁଝାଇଲେ ।

ବଳୀ ଗୁରୁଙ୍କ ଆଦେଶମତେ ନର୍ମଦା ନଦୀ କୂଳରେ ଗୋଟିଏ ପରେ ଗୋଟିଏ ଯଜ୍ଞ ଶେଷ କଲେ । ଏହିପରି କ୍ରମେ ଅନେକଶୋଟି ଯଜ୍ଞ ନିର୍ବିଘ୍ନରେ ଶେଷ ହେଲା । ଆରମ୍ଭ ହେଲା ଶେଷ ଯଜ୍ଞ ।

ସେତେବେଳେ ଦେବମାତା ଅଦିତି ଗୃହହୀନ ପୁତ୍ରମାନଙ୍କ ଦୁଃଖରେ ଦୁଃଖୀ ହୋଇ ନିଜର ପତିଦେବତା ମହର୍ଷି କାଶ୍ୟପଙ୍କୁ ପ୍ରାର୍ଥନା କଲେ ଯେ, ନିଜ ପୁଅ ଏହି ବିପତ୍ତିରୁ କିପରି ଉଦ୍ଧାର ପାଇବେ । ମହର୍ଷି କହିଲେ, "ତୁମେ ପୟୋବ୍ରତ କରି ଭଗବାନଙ୍କୁ ଆରାଧନା କର, ସେ ତୁମର ନିଶ୍ଚୟ ଗୁହାରି ଶୁଣିବେ ।" ଅଦିତି ସେଇଆ କଲେ । ତାଙ୍କ ବ୍ରତରେ ସନ୍ତୁଷ୍ଟ ହୋଇ ସ୍ୱୟଂ ନାରାୟଣ ତାଙ୍କୁ ଦେଖାଦେଇ କହିଲେ, "ଦେବି ! ଯେ ଧର୍ମ ରକ୍ଷା କରେ ତାକୁ ସର୍ବଦା ଧର୍ମ ରକ୍ଷା କରିଥାଏ । ଯେ ଧର୍ମାତ୍ମା, ଧର୍ମଜ୍ଞ, ମୁନିଋଷିଙ୍କ ଆଦେଶ ମାନି କାର୍ଯ୍ୟ କରେ ସେ ମଧ୍ୟ ମୋ ନିକଟରେ ଅଜେୟ । ତୁମେ ମୋ ଦର୍ଶନ ଲାଗି ଯେଉଁ କଠୋର ବ୍ରତ ଆଚରଣ କରିଅଛ, ତାହା ବ୍ୟର୍ଥ ହେବ ନାହିଁ । ମୁଁ ତୁମର ପୁତ୍ର ରୂପେ ଜନ୍ମଲାଭ କରି ନିଶ୍ଚୟ ଦେବତାମାନଙ୍କ ଦୁଃଖ ଲାଘବ କରିବି ।"

ବରଦାନ କରି ଭଗବାନ ଅନ୍ତର୍ଦ୍ଧାନ ହୋଇଗଲେ । ଅଦିତିଙ୍କ ଗର୍ଭରୁ ବାମନ ରୂପେ ସେ ଜନ୍ମ ନେଲେ ଓ ଯାଇ ପହଞ୍ଚିଲେ ବଳୀଙ୍କ ଯଜ୍ଞଶାଳାରେ । ସେତେବେଳକୁ ଯଜ୍ଞ ଶେଷ ହେବା ଉପରେ । ପୂର୍ଣ୍ଣାହୁତି ଆରମ୍ଭ ହେଉଥାଏ । ତାଙ୍କୁ ଦେଖି ଦୈତ୍ୟରାଜ ଯଥାବିଧି ସମ୍ମାନ କରି ଉଚ୍ଚ ଆସନରେ ବସାଇଲେ । ଯୋଡ଼ହସ୍ତ ହୋଇ କହିଲେ, "ହେ ବ୍ରହ୍ମଚାରୀ ! ଆପଣଙ୍କ ପାଦଧୂଳି ପଡ଼ି ଆଜି ଏ ଯଜ୍ଞସ୍ଥଳୀ ପବିତ୍ର ହୋଇଅଛି । ଆପଣଙ୍କ ଦର୍ଶନ ପାଇଁ ମୁଁ ନିଜେ ମଧ୍ଯ ଧନ୍ୟ । ଆଗମନର ଉଦ୍ଦେଶ୍ୟ ଓ କ'ଣ ଦାନ ଗ୍ରହଣ କରିବାକୁ ଚାହାନ୍ତି କହିଲେ ମୁଁ ତଦନୁଯାୟୀ ବ୍ୟବସ୍ଥା କରିବି ।"

ଭଗବାନ ବାମନ ବଳୀଙ୍କ ଦାନଶୀଳତାକୁ ପ୍ରଶଂସା କରି କହିଲେ, "ମୁଁ ଚାହୁଁଛି ମୋ ପାଦରେ ତିନି ପାଦ ଭୂମି ।" ତାହା ଶୁଣି ଦାନବୀର ବଳୀ ହସି ହସି କହିଲେ, "ହେ ବ୍ରାହ୍ମଣ ! ଏତେ ଅଳ୍ପ ଭୂମି ମାଗୁଛନ୍ତି କାହିଁକି ? ନିଜର ଭରଣପୋଷଣ ପାଇଁ ଅନ୍ତତଃ ଯେତିକି ଭୂମି ଦରକାର ତାହା ମାଗନ୍ତୁ । ତାହା ଶୁଣି ଗମ୍ଭୀର ସ୍ୱରରେ ବାମନ କହିଲେ, "ରାଜା ! ଲୋଭ ମଣିଷର ସବୁଠାରୁ ବଡ଼ ଶତ୍ରୁ । ଯଦି ମୁଁ ତିନିପାଦ ଭୂମିରେ ସନ୍ତୁଷ୍ଟ ନ ହୋଇ ଅଧିକ ଲୋଭ କରିବି, ତାହାହେଲେ ଗୋଟିଏ ରାଜ୍ୟ ପାଇବା ଲାଗି ମୋ ମନ ବଳାଇବ । ରାଜ୍ୟ ପାଇ ସନ୍ତୁଷ୍ଟ ନ ହେଲେ ମନ ବଳାଇବ ତ୍ରିଭୁବନର ଅଧିକାରୀ ହେବାଲାଗି । ଲୋଭର ଆଦି ଅନ୍ତ ନାହିଁ । ତେଣୁ ମୋର ଅନୁରୋଧ ଯେ, ମୋ ମନକୁ ଆଉ ଅଧିକ ଲୋଭାସକ୍ତ କର ନାହିଁ । ମୋର ମାଗିଥିବା ତିନିପାଦ ଭୂମି ହିଁ ଯଥେଷ୍ଟ ।"

ତାହା ଶୁଣି ସଂକଳ୍ପ କରିବା ଲାଗି ବଳୀ ରାଣୀଙ୍କୁ ଜଳପାତ୍ର ମାଗିଲେ । ଏହି ସମୟରେ ଶୁକ୍ରାଚାର୍ଯ୍ୟ ବାମନ ସ୍ୱୟଂ ଭଗବାନଙ୍କ ଅବତାର ଜାଣି ବଳୀଙ୍କୁ କହିଲେ, "ରାଜା !



( ଭଗବାନ ବଳୀଠାରୁ ତୃତୀୟ ପାଦ ଭୂମି ଦାନ ନେଉଛନ୍ତି )

ତୁମେ କେତେ ବଡ଼ ଭୁଲ କରିବାକୁ ଯାଉଛ ! ସେ ଭିକ୍ଷାର୍ଥୀ ବ୍ରାହ୍ମଣ ନୁହନ୍ତି, ନିଜେ ଭଗବାନ । ସେ ତାଙ୍କର ଗୋଟିଏ ପାଦ ମର୍ତ୍ତ୍ୟ ଓ ଆଉ ଗୋଟିଏ ପାଦ ସ୍ୱର୍ଗରେ ରଖିଲେ ଆଉ ଟିକିଏ ହେଲେ ସ୍ଥାନ ରହିବ ନାହିଁ । ତୃତୀୟ ପାଦ ଲାଗି ସ୍ଥାନ ଆସିବ କେଉଁଠୁ ? ଦାନ ଦେଇ ସାରିଲା ପରେ ତୁମେ ରହିବ କେଉଁଠି ?" ତାହା ଶୁଣି ବଳୀ କିଛି ସମୟ ଚିନ୍ତା କରି କହିଲେ, "ଗୁରୁଦେବ ! ମୁଁ ମୋ ବାକ୍ୟରୁ ଓହରିବି ନାହିଁ । କାରଣ ଯାହା ମୁଁ ଦାନ କରିବାକୁ ସଂକଳ୍ପ କରେ, ପରେ ତାହା ଭଙ୍ଗ କରିବା ମୋ ପକ୍ଷରେ ଅପରାଧ । ଆପଣ

ଯାହା କୁହନ୍ତୁ ନା କାହିଁକି, ମୁଁ ବ୍ରାହ୍ମଣକୁ କଦାପି ନିରାଶ କରିବ ନାହିଁ ।" ଶୁକ୍ରାଚାର୍ଯ୍ୟ ରାଗରେ ଜଳି ଉଠି କହିଲେ, "ତୁମେ ନିଜକୁ ବଡ଼ ପଣ୍ଡିତ ଓ ଧର୍ମଜ୍ଞ ବୋଲି ଭାବି ମୋ କଥାକୁ ଅବଜ୍ଞା କରିବାକୁ ଯାଉଛ ? ତୁମର ସମସ୍ତ ଧନ ସମ୍ପତ୍ତି ନଷ୍ଟ ହୋଇଯିବ ।"

ଗୁରୁ ଅଭିଶାପ ଦେଉଛନ୍ତି ଜାଣି ମଧ୍ୟ ବଳୀ ତିନି ପାଦ ଭୂମି ଦେବାକୁ ସଙ୍କଳ୍ପ କଲେ । ଭୂମିଦାନ ନେଲା ବେଳେ ବାମନ ଭୟଙ୍କର ରୂପ ଧାରଣ କରି ମାତ୍ର ଦୁଇଟି ପାଦରେ ତ୍ରିଭୁବନ ଅଧିକାର କଲେ । ତୃତୀୟ ପାଦ କେଉଁଠି ରଖିବେ ପଚାରିବାରୁ ବଳୀ କହିଲେ, "ସମ୍ପତ୍ତିଠାରୁ ସମ୍ପତ୍ତିର ଅଧିକାରୀ ହେଉଛି ବଡ଼ । ଆପଣ ତୃତୀୟ ପାଦ ମୋର ମସ୍ତକ ଉପରେ ରଖନ୍ତୁ ଓ ମୋର ସଂକଳ୍ପ ପୂର୍ଣ୍ଣ ହେଉ । ଭଗବାନ ସେଇଆ କଲେ । ବଳୀ ଧନ୍ୟ ହେଲେ । ଇନ୍ଦ୍ର ରାଜ୍ୟ ଫେରି ପାଇଲେ ।"

—ଶ୍ରୀ ମହାଭାରତ—



# ଛାୟା ସୀତା

ଥରେ ରାମଚନ୍ଦ୍ର ରାଜସଭାରେ ବସିଥାନ୍ତି, ବିଭୀଷଣ ନିଜର ସ୍ତ୍ରୀ ଓ ମନ୍ତ୍ରୀମାନଙ୍କୁ ନେଇ ଆସି ସେହି ସଭାରେ ପହଞ୍ଚି କାନ୍ଦି କାନ୍ଦି ହୋଇ କହିଲେ, "ଭଗବାନ ! ମୋତେ ରକ୍ଷା କରନ୍ତୁ । କୁମ୍ଭକର୍ଣ୍ଣର ପୁଅ ମୂଳକାସୁର, ଯେ କି ମୂଳାନକ୍ଷତ୍ରରେ ଜନ୍ମ ହୋଇଥିବାରୁ ତାହାର ବାପ ତାକୁ ବଣରେ ଛାଡ଼ି ଦେଇଥିଲା । ସେ ପାତାଳପୁରରୁ ଆସି ଏବେ ଲଙ୍କାରେ ପହଞ୍ଚିଛି । ଆପଣଙ୍କର ଲଙ୍କା ବିଜୟ ଓ ମୋର ସିଂହାସନ ଆରୋହଣ କଥା ଜାଣି ସେ ବର୍ତ୍ତମାନ ମୋତେ ରାଜସିଂହାସନରୁ ତଡ଼ିବାକୁ ବଦ୍ଧପରିକର । ମୁଁ ତା' ସହିତ ଗତ ଛ'ମାସ ହେଲା ଯୁଦ୍ଧ କରି ଆସୁଛି, ହେଲେ ତାକୁ ପରାସ୍ତ କରିବା ମୋ ପକ୍ଷରେ ଅସମ୍ଭବ । ସେ ସମଗ୍ର ରାଜ୍ୟରେ ଘୋଷଣା କରିଛି ଯେ, ପ୍ରଥମେ ମୋତେ ହତ୍ୟା କଲାପରେ ପିତୃହନ୍ତା ରାମଚନ୍ଦ୍ରଙ୍କୁ ହତ୍ୟା କରିବ । ଏ ପରିସ୍ଥିତିରେ ମୁଁ ଜୀବନ ଧରି ପଳାଇ ଆସିଛି, ଆପଣ ଯାହା ବିଚାର କରିବେ କରନ୍ତୁ ।

ଭକ୍ତର ଆକୁଳ ନିବେଦନ ଶୁଣି ରାମଚନ୍ଦ୍ର ଆଉ କାଳ ବିଳମ୍ବ ନକରି ଅତ୍ୟାଚାରୀ ରାକ୍ଷସକୁ ବଧ କରିବା ଲାଗି

ଲବ, କୁଶ, ଲକ୍ଷ୍ମଣ ଓ ବାନରସେନାଙ୍କୁ ସଙ୍ଗରେ ନେଇ ପୁଷ୍ପକଯାନରେ ଚଢ଼ି ଲଙ୍କାଗଡ଼କୁ ଯାତ୍ରା କଲେ । ମୂଳକାସୁର ରାମଚନ୍ଦ୍ର ଓ ବାନରସେନାଙ୍କ ଆଗମନ ଜାଣି ଯୁଦ୍ଧକୁ ପ୍ରସ୍ତୁତ ହେଲା । ସାତଦିନ ଧରି ତୁମୁଳ ଯୁଦ୍ଧ ଲାଗିଲା । ଅଯୋଧ୍ୟାରୁ ସୁମନ୍ତ୍ର ଆଦି ମନ୍ତ୍ରୀମାନେ ମଧ୍ୟ ଆସି ପହଞ୍ଚିଲେ । ଦୁଇ ପକ୍ଷରୁ ବହୁ ସୈନ୍ୟ ମଲେ । ହନୁମାନ ମୃତ ସଞ୍ଜିବନୀ ଆଣି ମୃତ ବାନର ସେନାଙ୍କୁ ଜୀବନ୍ୟାସ ଦେଉଥାଆନ୍ତି; କିନ୍ତୁ ରାକ୍ଷସକୁ ମାରି ନ ପାରି ରାମଚନ୍ଦ୍ର ବିମର୍ଷ ହୋଇ ପଡ଼ିଲେ । କଅଣ କରିବେ, କିଛି ବୁଦ୍ଧି ବାଟ ଦିଶିଲା ନାହିଁ । ଯେତେ ରାକ୍ଷସ ମରୁଥାଆନ୍ତି ପୁଣି ସେତିକି ରାକ୍ଷସ ଆସି ଯୁଦ୍ଧ କ୍ଷେତ୍ରରେ ହାଜର ହେଉଥାଆନ୍ତି । ସେହି ଦୃଶ୍ୟ ଦେଖି ରାମଚନ୍ଦ୍ର ଚିନ୍ତିତ ମନରେ କଳ୍ପବୃକ୍ଷ ତଳେ ବସିଛନ୍ତି, ସ୍ୱୟଂ ବ୍ରହ୍ମା ଆସି ସେଠି ପହଞ୍ଚିଲେ ଓ ପଚାରିଲେ, "ରଘୁପତି ! ଆପଣ ଏପରି ଚିନ୍ତିତ ମନରେ ବସିଛନ୍ତି କାହିଁକି ?" ରାମଚନ୍ଦ୍ର ମନ ଦୁଃଖରେ ତାଙ୍କୁ ସବୁ କଥା କହିଲେ ।

ବ୍ରହ୍ମା କହିଲେ, "ଆପଣ ସେହି ରାକ୍ଷସକୁ ମାରି ପାରିବେ ନାହିଁ; କାରଣ ସେ ମୋଠାରୁ ବର ପାଇଛି ଯେ ଜଣେ ସ୍ତ୍ରୀ ହାତରେ ହିଁ ତାହାର ମୃତ୍ୟୁ ହେବ । ହଁ, ଆଉ ଗୋଟିଏ କଥା ମନେ ରଖନ୍ତୁ । ତାହାର ପିତା କୁମ୍ଭକର୍ଣ୍ଣର ମୃତ୍ୟୁ ପରେ ଥରେ ସେ ଋଷିମାନଙ୍କୁ ଶୋକରେ ଆତୁର ହୋଇ କଥାଛଳରେ

କହୁଥିଲା, ଚଣ୍ଡୀସୀତା ଯୋଗୁଁ ମୋର କୁଳ ନଷ୍ଟ ହେଲା ।" ସୀତାଙ୍କୁ ଚଣ୍ଡୀ ସମ୍ବୋଧନ କରିବା ଶୁଣି ଋଷିମାନେ ବିରକ୍ତି ପ୍ରକାଶ କରିଥିଲେ । ଜଣେ ଋଷି ଠାକୁରାଣୀ ସୀତାଙ୍କୁ ସେପରି ସମ୍ବୋଧନ ନ କରିବାକୁ ବାରମ୍ବାର ବାରଣ କରିବା ସତ୍ତ୍ୱେ ରାକ୍ଷସ ସେଥିରୁ ବିରତ ହୋଇ ନ ଥିଲା; ବରଂ ସୀତାଙ୍କୁ ଅସମ୍ମାନ କରି ବହୁ କଥା କହିବାକୁ ଲାଗିଲା । ଶେଷରେ ଋଷିମାନେ ତାହା ସହ୍ୟ କରିପାରିଲେ ନାହିଁ । ତାଙ୍କ ମଧ୍ୟରୁ ଜଣେ ଋଷି ଅଭିଶାପ ଦେଇଥିଲେ ଯେ, ଯେଉଁ ସୀତାଙ୍କୁ ତୁ ବାରମ୍ବାର ଅସମ୍ମାନ କରୁଛୁ, ସେହି ସୀତାଙ୍କ ହାତରେ ତୋର ମୃତ୍ୟୁ ହେବ । ତାହା ଶୁଣି ରାକ୍ଷସ ସଙ୍ଗେ ସଙ୍ଗେ ସେହି ଋଷିଙ୍କୁ ବଧ କରିଥିଲା । ଅତଏବ ବର୍ତ୍ତମାନ ପରିସ୍ଥିତରେ କେବଳ ସୀତା ହିଁ ତାକୁ ମାରିପାରିବେ; ତେଣୁ କାଳବିଳମ୍ବ ନ କରି ସୀତାଙ୍କୁ ଏଠାକୁ ଆଣିବାର ବ୍ୟବସ୍ଥା କରନ୍ତୁ ।

ତାହା ଶୁଣି ରାମଚନ୍ଦ୍ର ଆଶ୍ୱସ୍ତ ହେଲେ ଓ ହନୁମାନ, ଗରୁଡ଼ ଇତ୍ୟାଦିଙ୍କୁ ରଥରେ ସୀତାଙ୍କୁ ଆଣିବାଲାଗି ଅଯୋଧ୍ୟା ପଠାଇଲେ । ଏଣେ ସୀତା ପତିଙ୍କ ଆଗମନର ବିଳମ୍ବ ହେବାରୁ ଚିନ୍ତାରେ ୱାଉଁଳ ପଡ଼ୁଥାଆନ୍ତି । ବହୁ ଦେବଦେବୀଙ୍କୁ ପୂଜା କରି ପତିଙ୍କ ଶୁଭ ମନାସୁଥାଆନ୍ତି । ଗରୁଡ଼ ଓ ହନୁମାନ ଆସି ଅଯୋଧ୍ୟାରେ ପହଞ୍ଚିଲେ । ତାଙ୍କଠାରୁ ସବୁ ବୃତ୍ତାନ୍ତ ଶୁଣିଲା ପରେ ସେ ଶାଶୁମାନଙ୍କ ଅନୁମତି ନେଇ ବାହାରିଲେ ଲଙ୍କା

ଅଭିମୁଖେ । ରାମଚନ୍ଦ୍ରଙ୍କଠାରୁ ରାକ୍ଷସର ପରାକ୍ରମ ଓ ଅତ୍ୟାଚାରର କଥା ଜାଣି କ୍ରୋଧରେ ତାଙ୍କ ଦେହ ଥରି ଉଠିଲା । ଭୟଙ୍କର ଗର୍ଜନ କରି ଛାୟାରୂପ ଧରି ସେ ଯୁଦ୍ଧକ୍ଷେତ୍ରରେ ପହଞ୍ଚିଲେ । ତାହା ଜାଣି ରାକ୍ଷସ ପର୍ବତ ଗୁହାରୁ ବାହାରି ଆସି ଛାୟା ସୀତାଙ୍କୁ ଦେଖି କହିଲା, "ନାରକୀ ! ତୁ ଏ ସ୍ଥାନ ଛାଡ଼ି ଶୀଘ୍ର ଚାଲିଯାଅ । ମୁଁ ଚଣ୍ଡୀ ସୀତାଙ୍କୁ ଯୁଦ୍ଧକ୍ଷେତ୍ରରେ ଦେଖିବାକୁ ଚାହେଁନା ।"

ଛାୟା ସୀତା କହିଲେ, "ପାପିଷ୍ଠ ! ତୁ ବ୍ରହ୍ମହତ୍ୟା ଦୋଷରେ ଦୋଷୀ । ନିରୀହ ଋଷିଙ୍କୁ ଅଯଥା ହତ୍ୟା କରିଛୁ । ମୁଁ ତୋତେ ନିଶ୍ଚୟ ବଧ କରିବି ।" ତାହା କହି ସେ ରାକ୍ଷସ



( ମାୟା ସୀତାଙ୍କ ମୂଳକାସୁର ବଧ )

ଉପରେ ପାଞ୍ଚଟି ଶର ନିକ୍ଷେପ କଲେ । ରାକ୍ଷସ ମଧ୍ୟ ପ୍ରତି-ଆକ୍ରମଣ କଲା । ଶେଷରେ ଛାୟାମୂର୍ତ୍ତି ଚଣ୍ଡିକାସ୍ତ୍ର ପ୍ରୟୋଗ

କରି ମୂଳକାସୁରର ଶିର ଛେଦନ କଲେ । ରାକ୍ଷସ ମାନ୍ଙ୍କରୁ ଲଙ୍କାରେ ଶାନ୍ତପ୍ରତିଷ୍ଠା ହେଲା । ବିଭୀଷଣ ରାମଚନ୍ଦ୍ର ଓ ସୀତାଙ୍କୁ ଭକ୍ତିପୂର୍ଣ୍ଣ ପ୍ରଣାମ କରି ଉଭୟଙ୍କୁ ଆନନ୍ଦରେ ଲଙ୍କାଗଡ଼ ବୁଲାଇ ଦେଖାଇଲେ । ରାମଚନ୍ଦ୍ର ରାବଣକୁ ବଧ କଲା ପରେ ଲଙ୍କା-ଗଡ଼କୁ ନ ଯାଇ ଅଯୋଧ୍ୟା ଫେରି ଆସିଥିଲେ; କିନ୍ତୁ ଏଥର ସେ ସ୍ୱର୍ଣ୍ଣପୁରୀ ଲଙ୍କା ଦେଖି ବହୁତ ଖୁସି ହେଲେ । ସୀତା ମଧ୍ୟ ଅଶୋକବନରେ ବୁଲି ପୂର୍ବ କଥା ମନେ ପକାଇଲେ । କିଛିଦିନ ଲଙ୍କାରେ ଅବସ୍ଥାନ କରି ଲବ, କୁଶ, ଲକ୍ଷ୍ମଣ ଓ ହନୁମାନ ଇତ୍ୟାଦିଙ୍କ ସହିତ ଉଭୟେ ଅଯୋଧ୍ୟାକୁ ଲେଉଟି ଆସିଲେ ।

—ଆନନ୍ଦ ରାମାୟଣ—



# ହନୁମାନଙ୍କ ତପୋଭଙ୍ଗ

ଥରେ ଭଗବାନ ଶ୍ରୀକୃଷ୍ଣ ଗରୁଡ଼କୁ ଡାକି କହିଲେ, "ଗରୁଡ ! ମୋର କେତେଗୋଟି ସୌଗନ୍ଧିକ ପଦ୍ମଫୁଲ ଦରକାର, ଶୀଘ୍ର ଆଣି ଦେଇ ପାରିବ ?" ଆଜ୍ଞାବହ ଗରୁଡ଼ ସେଥିରେ ରାଜି ହୋଇ ସଙ୍ଗେ ସଙ୍ଗେ ବାହାରି ପଡ଼ିଲେ ଗନ୍ଧମାର୍ଦ୍ଦନ ପର୍ବତକୁ । ବାହାରିଲା ବେଳେ ନିଜର ବଳ ଓ ବେଗ ବିଷୟ ଭାବି ତାଙ୍କ ମନରେ ଗର୍ବ ଆସିଲା । ଆଖି-ପିଛୁଳାକେ ସେ ଯାଇ ପହଞ୍ଚିଗଲେ ଗନ୍ଧମାର୍ଦ୍ଦନ ପର୍ବତ ଉପରେ । ମନଇଚ୍ଛା ପଦ୍ମଫୁଲ ତୋଳିବାକୁ ଲାଗିଲେ । ସେହି ପର୍ବତ ଉପରେ ସେତେବେଳେ ତପସ୍ୟା କରୁଥାଆନ୍ତି ମହାବୀର ହନୁମାନ । ଫୁଲ ତୋଳୁ ତୋଳୁ ଗରୁଡ଼ ତାଙ୍କ ହାବୁଡ଼େ ପଡ଼ିଗଲେ । ହନୁମାନ ପଚାରିଲେ, "ତୁମେ କିଏ ? କୁବେରଙ୍କ ଆଜ୍ଞା ନ ନେଇ କାହା ପାଇଁ ଫୁଲ ତୋଳୁଛ ?"

ଗରୁଡ଼ ରାଗରେ ଉତ୍ତର ଦେଲେ "ମୁଁ ଫୁଲ ତୋଳୁଛି ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କ ପାଇଁ । ତେଣୁ ଏଥିଲାଗି କାହାର ଅନୁମତି ନେବି କାହିଁକି ?" ତାହା ଶୁଣି ହନୁମାନ ରାଗିଯାଇ ଗରୁଡ଼କୁ କାଖରେ ଯାକି ପବନ ବେଗରେ ଉଡ଼ି

ଚାଲିଲେ ଦ୍ୱାରକାପୁରକୁ । ଗଗନ ପବନ କମ୍ପି ଉଠୁଥାଏ । ଦ୍ୱାରକାପୁରୀ ଆଜ ଅଳଙ୍ଘବାଟ ଅଛି, ସୁଦର୍ଶନ ଚକ୍ର ଆସି ତାଙ୍କ ବାଟ ଓଗାଳିଲେ । ତାହାଦେଖି ମହାପରାକ୍ରମୀ ହନୁମାନ ସୁଦର୍ଶନଙ୍କୁ ଭଲରେ ବାଟ ଛାଡ଼ି ଦେବାକୁ କହିଲେ । ହେଲେ ସୁଦର୍ଶନ ତାଙ୍କ କଥା ଶୁଣିଲେ ନାହିଁ । ହନୁ ସଙ୍ଗେ ସଙ୍ଗେ ତାଙ୍କୁ ଧରି ଗରୁଡ଼ପରି ଅନ୍ୟ ଏକ କାଖରେ ଯାକି ଆଗେଇ ଚାଲିଲେ ।

ଭଗବାନ ଶ୍ରୀକୃଷ୍ଣ ତାହା ଜାଣିପାରି ପାଖରେ ଥିବା ରାଣୀମାନଙ୍କୁ କହିଲେ "ଦେଖ, ହନୁମାନ ଧାଇଁ ଆସୁଛି ମୋ ନିକଟକୁ । ବର୍ତ୍ତମାନ ତା'ର କ୍ରୋଧ କମାଇବାକୁ ହେବ । ନୋହିଲେ ଦ୍ୱାରକାକୁ ସେ ଟେକିନେଇ ଫୋପାଡ଼ି ଦେବ ଅଗାଧ ସମୁଦ୍ର ଗର୍ଭରେ । ତେଣୁ ମୁଁ ଗୋଟିଏ ଉପାୟ ପାଇଁଛି । ଯଦି ପହଞ୍ଚିଲା ମାତ୍ରେ ସେ ସୀତାରାମଙ୍କର ଦର୍ଶନ କରେ ତାହାହେଲେ ହଠାତ୍ ତା' ମନରୁ ସବୁ ରାଗ ଉଭେଇ ଯିବ । ବର୍ତ୍ତମାନ ମୁଁ ରାମ ରୂପ ଧାରଣ କରୁଛି, ତୁମ ଭିତରୁ ଜଣେ କିଏ ସୀତା ହୋଇ ମୋ ନିକଟକୁ ଆସ ।" ରାଣୀମାନଙ୍କ ଭିତରୁ କିନ୍ତୁ କେହି ଜଣେ ହେଲେ ସୀତାଙ୍କ ରୂପ ଧାରଣ କରି ପାରିଲେ ନାହିଁ । ତାହା ଦେଖି ଭଗବାନ ସଙ୍ଗେ ସଙ୍ଗେ ସ୍ମରଣ କଲେ ଶ୍ରୀରାଧାଙ୍କୁ । ସ୍ମରଣ ମାତ୍ରେ ଶ୍ରୀରାଧା ଆସି ପହଞ୍ଚିଲେ ଓ ଶ୍ରୀକୃଷ୍ଣଙ୍କ ଇଚ୍ଛା ପୂରଣ କଲେ ।

ହନୁମାନ ଦ୍ୱାରିକାରେ ଆସି ପହଞ୍ଚି ସଙ୍ଗେ ସଙ୍ଗେ ନିଜର ପରମ ଆରାଧ୍ୟ ରାମଚନ୍ଦ୍ର ଓ ସୀତାଙ୍କୁ ଦେଖି ଭକ୍ତିଭରା

ହୃଦୟରେ ପ୍ରଣାମ କଲେ । ରାମରୂପୀ ଶ୍ରୀକୃଷ୍ଣ ଭକ୍ତଙ୍କୁ କହିଲେ; "ହନୁମାନ ! ତୁମ ଦୁଇ ବାହୁତଳେ ସେ କ'ଣ ଦେଖା-



( ହନୁମାନଙ୍କ ରାମ ସୀତା ଦର୍ଶନ )

ଯାଉଛି ?" ହନୁ ଉତ୍ତର ଦେଲେ "ପ୍ରଭୋ ! ଗୋଟିଏ ଛୋଟିଆ ଚଢ଼େଇ ମୋର ତପସ୍ୟାରେ ବାଧା ଦେବାରୁ ଆଉ ବାଟରେ ଆସିଲାବେଳେ ଗୋଟିଏ ପିଲାଙ୍କ ଖେଳନା ପରି ଚକ୍ର ମୋତେ ବାଟ ଓଗାଳିବାରୁ ମୁଁ ତାଙ୍କୁ ଧରି ଆଣିଛି । ଆପଣଙ୍କର ଯଦି ପଦ୍ମଫୁଲ ଦରକାର ଥିଲା, ମୋତେ ସ୍ମରଣ କରିଥିଲେ ଆଖିପିଛୁଳାକେ ଲକ୍ଷେ ପଦ୍ମ ଆଣି ପାଦ ପୂଜା କରିଥାଆନ୍ତି । ସାମାନ୍ୟ ଗୋଟିଏ ଛୋଟିଆ ପକ୍ଷୀ ଯକ୍ଷଙ୍କ ବିନା ଅନୁମତିରେ ଫୁଲ ତୋଳିବାକୁ ଯାଇ ପଦ୍ମବନ ନଷ୍ଟ କଲା । ତାକୁ ନ ମାରି ଆପଣଙ୍କ ପାଖକୁ ଧରି ଆଣିଛି ।"

ରାମବେଶଧାରୀ ଶ୍ରୀକୃଷ୍ଣ କହିଲେ, "ହେଉ । ସେ ତିନିହିଁଙ୍କୁ ତୁମେ ଛାଡ଼ିଦିଅ । ମୁଁ ତୁମ ଉପରେ ଭାରି ଖୁସି । ଯାଅ, ଗନ୍ଧମାର୍ଦ୍ଦନରେ ପୁଣି ତପସ୍ୟା ଆରମ୍ଭ କର ।"

ଭଗବାନଙ୍କ ଆଜ୍ଞା ପାଇ ହନୁମାନ ସୁଦର୍ଶନ ଚକ୍ର ଓ ଗରୁଡ଼କୁ ସେଠାରେ ଛାଡ଼ି ରାମନାମ ଉଚ୍ଚାରଣ କରି ଫେରି-ଗଲେ ଗନ୍ଧମାର୍ଦ୍ଦନ ପର୍ବତ ଉପରକୁ । ଗରୁଡ଼ ନିଜର ଗତି, ସୁଦର୍ଶନ ନିଜର ଶକ୍ତି ଓ ରାଣୀମାନେ ନିଜର ରୂପ ନେଇ ମନରେ ଯେଉଁ ଗର୍ବ କରୁଥିଲେ, ଏଇ ଘଟଣା ପରେ ତାଙ୍କ ଗର୍ବ ଆଉ ରହିଲା ନାହିଁ ।

— କଥା କଳ୍ପ —

